ବିନାୟକ ଆଚାର୍ଯ୍ୟ

# ସ୍ମାରକୀ ବକ୍ତୃତା ମାଳା

୨୦୦୬



ବିନାୟକ ଆଚାର୍ଯ୍ୟ ମହାବିଦ୍ୟାଳୟ

ବ୍ରହ୍ମପୁର (ଗଞ୍ଜାମ)

# ବିନାୟକ ଆଚାର୍ଯ୍ୟ ସ୍ମାରକୀ ବକ୍ତୃତାମାଳା

ଦ୍ୱିତୀୟ

୩୦ ଅଗଷ୍ଟ ୨୦୦୬

ଓଡ଼ିଶାର ଇତିହାସ ଓ ସଂସ୍କୃତିକୁ ଗଞ୍ଜାମର ଜମିଦାରୀ ଗୁଡ଼ିକର ଅବଦାନ

**ପ୍ରଫେସର ଅଶୋକ କୁମାର ରଥ**

ଅବିସ୍ମରଣୀୟ ଶିକ୍ଷକ ଓ ସମାଜବାଦୀ ସଂଗଠକ ବିନାୟକ ଆଚାର୍ଯ୍ୟ

**ଡ଼କ୍ଟର କୈଳାସ ଚନ୍ଦ୍ର ଦାଶ**



## ବିନାୟକ ଆଚାର୍ଯ୍ୟ ମହାବିଦ୍ୟାଳୟ

ବ୍ରହ୍ମପୁର, ଗଞ୍ଜାମ

# ଉପକ୍ରମଣିକା

ବିନାୟକ ଆଗ୍ରର୍ଯ୍ୟ ବିନାୟକ ଆଗ୍ରର୍ଯ୍ୟ । ଅନାୟାସରେ ବାଛି ହୋଇଗଲ ଭଳି ଭିନ୍ନ ଏକ ବ୍ୟକ୍ତିତ୍ୱ । ରାଜନୀତିରେ ସିଏ ଥିଲେ ସୁଦ୍ଧା ରାଜନୀତି ତାଙ୍କ ଭିତରେ ନଥିଲା । ତାଙ୍କ ପାଇଁ ରାଜନୀତି ନଥିଲା ଜୀବିକାର୍ଜନର ଏକ ଅବଲମ୍ବନ, ଥିଲା ବୁଭୁକ୍ଷିତ ଜନତାର ସେବା ପାଇଁ ଏକ ମାଧ୍ୟମ । ସେଥିପାଇଁ ଉତ୍କଟ ରାଜନୈତିକ ଉଚ୍ଚାକାଂକ୍ଷା ତାଙ୍କୁ କେବେ କବଳିତ କରିନଥିଲା ।

ଆଜିକାଲି ସବୁ ରାଜଧାନୀ ବାଦଶାହ ମାନଙ୍କର, ସ୍ତାବକ ମାନଙ୍କର । ନୀତି, ଆଦର୍ଶ ଏବଂ ମୂଲ୍ୟବୋଧକୁ ଜୀବନର ବ୍ରତ କରିଥିବା ସାଧକମାନେ ସେଠି ସଂଖ୍ୟାଲଘୁ । ଅଥଚ ଏହି ସଂଖ୍ୟାଲଘୁମାନେ ହିଁ ଯୁଗେଯୁଗେ ସମାଜକୁ ଦିଗ୍‌ଦର୍ଶନ ଦେଇଥାନ୍ତି । ସେମାନଙ୍କୁ ନମସ୍କାର ।

ବିନାୟକ ଆଗ୍ରର୍ଯ୍ୟଙ୍କ ଅଶୀତମବର୍ଷ ଜନ୍ମ ଦିବସରେ ଆଜି ଆୟୋଜିତ ଏହି ସ୍ମାରକୀ ବକ୍ତୃତା କାର୍ଯ୍ୟକ୍ରମ ତାଙ୍କ ସ୍ମୃତି ପ୍ରତି ଏକ ଭକ୍ତିପୂର୍ଣ୍ଣ ଶ୍ରଦ୍ଧା ନିବେଦନ । ବିଶିଷ୍ଟ ଐତିହାସିକ ତଥା ଲବ୍ଧ ପ୍ରତିଷ୍ଠ ଗବେଷକ ପ୍ରଫେସର ଅଶୋକ କୁମାର ରଥ ଏବଂ ଡକ୍ଟର କୈଳାସ ଚନ୍ଦ୍ର ଦାଶ ଆମର ଅନୁରୋଧ ରକ୍ଷାକରି ଦୁଇଟି ମୂଲ୍ୟବାନ ଅଭିଭାଷଣ ଉପସ୍ଥାପନ କରିଛନ୍ତି । ମୁଁ ସେମାନଙ୍କ ନିକଟରେ ଗଭୀର କୃତଜ୍ଞ ।

କାର୍ଯ୍ୟକ୍ରମର ପରିକଳ୍ପନା ଏବଂ ପ୍ରସ୍ତୁତିରେ ଅତ୍ୟନ୍ତ ନିଷ୍ଠାପର ଭାବେ କାର୍ଯ୍ୟ କରିଛନ୍ତି 'ବିନାୟକ ଆଗ୍ରର୍ଯ୍ୟ ସ୍ମାରକୀ ବକ୍ତୃତା ସମିତି'ର ସଦସ୍ୟମାନେ— ଡକ୍ଟର କୃଷ୍ଣ ବଲ୍ଲଭ ମିଶ୍ର, ଡକ୍ଟର ବାସୁଦେବ ଛଟୋଇ, ପ୍ରଫେସର ବିଜୟ କୁମାର ବହିଦାର, ଡକ୍ଟର ଗୋପାଳ ହାଲଦାର, ଅଧ୍ୟାପକ ଶ୍ୟାମ ଭୋଇ, ଶ୍ରୀ ଶଶିଭୂଷଣ ରଥ ଏବଂ ଆବାହକ ଡକ୍ଟର ଅଲେଖ ଚନ୍ଦ୍ର ପ୍ରଧାନ । ଏମାନଙ୍କ ସମେତ ମୋର ସମସ୍ତ ସହକର୍ମୀ ଏବଂ ଶ୍ରଦ୍ଧେୟ ଛାତ୍ରଛାତ୍ରୀ ମାନଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି କାର୍ଯ୍ୟ କ୍ରମଟିର ସଫଳ ରୂପାୟଣ ଦିଗରେ ଅକୁଣ୍ଠ ସହଯୋଗ ପାଇଁ ।

ପରଂପରା ପାରଂପରିକ ନ ହେଉ । ସର୍ଜନ ଶୀଳତାର ସ୍ନିଗ୍ଧ ସ୍ପର୍ଶରେ ତାହା ମହିମାନ୍ୱିତ ହୋଇଉଠୁ; ଏହି କାମନା ।

ପ୍ରଦୀପ କୁମାର ମହାପାତ୍ର
ଅଧ୍ୟକ୍ଷ

# ଓଡ଼ିଶାର ଇତିହାସ ଓ ସଂସ୍କୃତିକୁ
# ଗଞ୍ଜାମର ଜମିଦାରୀ ଗୁଡ଼ିକର ଅବଦାନ

• ପ୍ରଫେସର ଅଶୋକ କୁମାର ରଥ

ଓଡ଼ିଶାର ଇତିହାସ ଓ ସଂସ୍କୃତିକୁ ଗଞ୍ଜାମର ଇଷ୍ଟେଟ୍ ବା ଜମିଦାରୀ ମାନଙ୍କର ଅବଦାନ ଗୁରୁତ୍ୱପୂର୍ଣ୍ଣ ଅଟେ । ସେ ଗୁଡ଼ିକ ମଧ୍ୟରେ ଘୁମୁସର, ଖଲ୍ଲିକୋଟ, ଆଠଗଡ଼, ଧରାକୋଟ, ବଡ଼ଖେମୁଣ୍ଡି, ଶେରଗଡ଼, ଚିକିଟୀ ପ୍ରଭୃତି ଉଲ୍ଲେଖନୀୟ ।

ଉପରୋକ୍ତ ଜମିଦାରୀ ଗୁଡ଼ିକ ବିଭିନ୍ନ ରାଜବଂଶ ଅଧୀନରେ ଗୋଟିଏ ଗୋଟିଏ ରାଜ୍ୟରୂପେ ପରିଗଣିତ ହୋଇଥିଲା । ଏ ସବୁ ରାଜ୍ୟର ରାଜା – ଜମିଦାରମାନେ ସ୍ୱଦେଶ ପ୍ରେମୀ, ସଂସ୍କୃତି ପ୍ରେମୀ ଓ ପ୍ରଜାବତ୍ସଳ ଥିଲେ । ଭାଷା, ସାହିତ୍ୟ, ଧର୍ମ, ଦର୍ଶନ, ଶିକ୍ଷା, ସଙ୍ଗୀତ, ନୃତ୍ୟ, ନାଟକ, କଳା ଓ ସ୍ଥାପତ୍ୟ, କୁଟୀର ଶିଳ୍ପ, ତ୍ୟାଗ, ବୀରତ୍ୱ, ଦେଶାତ୍ମବୋଧ, ଇଂରେଜ ଆଧିପତ୍ୟ ବିରୋଧୀ ଆନ୍ଦୋଳନ, ଓଡ଼ିଆ ଜାତୀୟତାର ବିକାଶ, ଭାଷା ଆନ୍ଦୋଳନ, ଓଡ଼ିଆ ଭାଷା ଭାଷୀ ବିଚ୍ଛିନ୍ନାଞ୍ଚଳର ଏକତ୍ରୀ କରଣ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ, ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ତଥା ସମ୍ବାଦ ପତ୍ର ଓ ପତ୍ରିକା ପ୍ରକାଶନ ପ୍ରଭୃତି କ୍ଷେତ୍ରରେ ଗଞ୍ଜାମର ରାଜା ଜମିଦାର ମାନଙ୍କ ଅତୁଳନୀୟ ଅବଦାନ ଅବିସ୍ମରଣୀୟ ଏବଂ ତାହା ଦକ୍ଷିଣ ଓଡ଼ିଶା ତଥା ଓଡ଼ିଶାର ସଂସ୍କୃତି, ଐତିହ୍ୟ ତଥା ପରମ୍ପରା କୁ ଋଦ୍ଧିମନ୍ତ କରିଛି ।

**ଘୁମୁସର :** ଗଞ୍ଜାମ ଜିଲ୍ଲାର ଉତ୍ତର ପଶ୍ଚିମରେ ଗିରିବନ ପରିବେଷ୍ଟିତ ତଥା ଆଦିବାସୀ ଅଧ୍ୟୁଷିତ ଘୁମୁସର ଥିଲା ଗଞ୍ଜାମର ଜମିଦାରୀ ଗୁଡ଼ିକ ମଧ୍ୟରେ ସର୍ବପ୍ରାଚୀନ, ସର୍ବବୃହତ୍ ଓ ସର୍ବାଧିକ ଶକ୍ତିଶାଳୀ ଘୁମୁସରରେ ଭଞ୍ଜ ରାଜ ବଂଶ ଶାସନ କରିଥିଲେ । ଖ୍ରୀଷ୍ଟୀୟ ଅଷ୍ଟମରୁ ନବମ ଶତାବ୍ଦୀର ଆରମ୍ଭ ବେଳକୁ ଘୁମୁସର ବୌଦ ରାଜ୍ୟ ଅନ୍ତର୍ଭୁକ୍ତ ଥିଲା ଏବଂ ତାହାର ନାମ ଥିଲା ଖିଞ୍ଜାଳି ମଣ୍ଡଳ । ସେତିକିବେଳେ ବୌଦରେ ଭଞ୍ଜରାଜାମାନେ ଭୌମକର ରାଜବଂଶ ଅଧୀନରେ ସାମନ୍ତ ରାଜାରୂପେ ରାଜତ୍ୱ କରୁଥିଲେ । ଖ୍ରୀ.ଅ. ୮୩୨ ରେ ବୌଦର ରାଜା ରଘୁନାଥ ଭଞ୍ଜ ଖିଞ୍ଜାଳିରେ କନ୍ଧ ମାନଙ୍କ ଦ୍ୱାରା ସଂଗଠିତ ବିଦ୍ରୋହ ଦମନ କଲାପରେ ଉକ୍ତ ଅଞ୍ଚଳରେ ଅଭିଯାନ ଚଳାଇ ଶାନ୍ତି ଶୃଙ୍ଖଳା ସ୍ଥାପନ କରିଥିଲେ । ତାଙ୍କର ଅଭିଯାନ କାଳରେ ନେଟେଙ୍ଗା ନିକଟସ୍ଥ ବରପଲ୍ଲୀଠାରେ ସେ ଦେଖିବାକୁ ପାଇଲେ ଏକ ମନୋରମ ଗୁମା (କୁଦ୍ ବା ଉଚ୍ଚଭୂମି) ଏବଂ ତାକୁ ଘେରିଥିବା ଏକ ସର (ନିର୍ଝର ବାଜଳୀ) ସମ୍ଭବତଃ ତାହାଥିଲା ଏକ ପ୍ରାଚୀନ ଦୁର୍ଗର ଧ୍ୱଂସାବଶେଷ । ସେ ସେଠାରେ ଏକ ଦୁର୍ଗ ନିର୍ମାଣକରି ତାହାର ନାମ ରଖିଲେ 'ଗୁମା ସରଗଡ଼' । କାଳକ୍ରମେ ଗୁମାସର ନାମ ଅପଭ୍ରଂଶ ହୋଇ ଘୁମୁସର ନାମରେ କଥିତ ହେଲା । ଏହିପରି ଘୁମୁସର ରାଜ୍ୟ ଖ୍ରୀ.ଅ.୮୩୬

ରେ ରଘୁନାଥ ଭଞ୍ଜଙ୍କ ଦ୍ୱାରା ପ୍ରତିଷ୍ଠିତ ହେଲା ଏବଂ ସେଠାରେ ଭଞ୍ଜରାଜବଂଶର ଶାସନ ଆରମ୍ଭ ହୋଇଥିଲା ।

ରଘୁନାଥ ଭଞ୍ଜ ଘୁମୁସରରେ ଖ୍ରୀ.ଅ. ୮୩୨ ରୁ ଖ୍ରୀ,ଅ. ୮୫୨ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାପରେ ସେଠାରେ ଅନେକ ଭଞ୍ଜବଂଶୀ ରଜା ୩୫୦ରୁ ଊର୍ଦ୍ଧ ବର୍ଷକାଳ ରାଜତ୍ୱ କରିଥିଲେ । ପ୍ରତାପଭଞ୍ଜଙ୍କ ରାଜତ୍ୱ କାଳ (ଖ୍ରୀ,ଅ. ୧୧୯୦ – ୧୨.୦୬) ରେ ତାଙ୍କର ରାଜଧାନୀ ଘୁମୁସର ଗଡ଼ ଠାରୁ କୁଲାଡ଼କୁ ସ୍ଥାନାନ୍ତରିତ ହୋଇଥିଲା । ସେହି ସମୟରୁ କୁଲାଡ଼ ଘୁମୁସରର ଭଞ୍ଜ ରାଜାମାନଙ୍କ ରାଜଧାନୀ ହୋଇ ରହିଲା ।

ଘୁମୁସରର ଭଞ୍ଜରାଜାମାନେ ଭୌମକର, ସୋମବଂଶୀ କେଶରୀ, ଗଙ୍ଗ ଓ ସୂର୍ଯ୍ୟବଂଶୀ ଗଜପତିଙ୍କ ସାମନ୍ତ ରୂପେ ଶାସନ କରିଥିଲେ । ଖ୍ରୀ.ଅ. ୧୫୪୨ ରେ ଘୁମୁସର ଭୋଇ ବଂଶର ପ୍ରତିଷ୍ଠାତା ଗୋବିନ୍ଦ ବିଦ୍ୟାଧରଙ୍କ ଶାସନାଧୀନ ହେଲା । ତାପରେ ଘୁମୁସର ଯଥାକ୍ରମେ ମୋଗଲ ସମ୍ରାଟ ଆଉରଙ୍ଗଜେବ ଏବଂ ହାଇଦରାବାଦର ନିଜାମଙ୍କ ରାଜତ୍ୱାଧୀନ ହେଲା । ଖ୍ରୀ.ଅ. ୧୭୫୩ ରେ ଘୁମୁସର ଜମିଦାରୀ ଫରାସୀମାନଙ୍କ ଅଧୀନକୁ ଆସିଲା । ମାତ୍ର ସ୍ୱାଧୀନ ଚେତା ରାଜା କୃଷ୍ଣଭଞ୍ଜ ଫରାସୀ ଆଧିପତ୍ୟ ସ୍ୱୀକାର କଲେ ନାହିଁ ଏବଂ ଫରାସୀ କର୍ତ୍ତୃପକ୍ଷଙ୍କୁ ପେସ୍କସ୍ ଦେଲେ ନାହିଁ । ଫରାସୀ ସେନାପତି ଡ଼ି.ବୁସି କୃଷ୍ଣଭଞ୍ଜଙ୍କ ଠାରୁ ରାଜସ୍ୱ ଆଦାୟ ନିମନ୍ତେ ୧୭୫୭ ଏପ୍ରିଲ ମାସରେ ଘୁମୁସର ଆକ୍ରମଣ କରିଥିଲେ । ଯୁଦ୍ଧରେ ଫରାସୀ ପକ୍ଷର ବହୁସୈନ୍ୟ ହତାହତ ହୋଇଥିଲେ ଏବଂ କୃଷ୍ଣଭଞ୍ଜଙ୍କ ସହିତ ଡ଼ି.ବୁସି ସନ୍ଧି କରିଥିଲେ । ଶେଷରେ ୧୭୬୬ ଖ୍ରୀ.ଅରେ ଘୁମୁସର ସମେତ ଗଞ୍ଜାମ ଜିଲ୍ଲା ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀ ଶାସନାଧୀନରେ ମାନ୍ଦ୍ରାଜ ପ୍ରେସିଡ଼େନ୍ସି ଅନ୍ତର୍ଭୁକ୍ତ ହୋଇରହିଲା । ଏଡ୍‌ୱାର୍ଡ଼ କଟ୍‌ସଫୋର୍ଡ଼ ଗଞ୍ଜାମର ପ୍ରଶାସକ ରୂପେ ନିଯୁକ୍ତ ହେଲେ । ତାଙ୍କୁ ରେସିଡ଼େଣ୍ଟ କୁହାଗଲା । ଘୁମୁସର ର ପ୍ରବଳ ପରାକ୍ରମୀ ରାଜା କୃଷ୍ଣଭଞ୍ଜ ଇଂରେଜ ଆଧିପତ୍ୟ ବିରୋଧରେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ । ୧୭୯୯ ଖ୍ରୀ. ଅ. ରେ ଶ୍ରୀକର ଭଞ୍ଜ ଗଞ୍ଜାମର ଅନ୍ୟାନ୍ୟ ରାଜା ଜମିଦାରଙ୍କ ସହଯୋଗରେ ଇଂରେଜ କମ୍ପାନୀ ସରକାରଙ୍କ ବିରୋଧରେ ବିଦ୍ରୋହ କରିଥିଲେ । ମାତ୍ର ଏହି ବିଦ୍ରୋହ ବିଫଳ ହୋଇଥିଲା । ଶେଷରେ ୧୮୩୬ ଖ୍ରୀ.ଅ. ଡ଼ିସେମ୍ବର ମାସରେ ଇଂରେଜ କର୍ତ୍ତୃପକ୍ଷ ଭଞ୍ଜରାଜବଂଶ ଶାସନର ବିଲୋପ କରି ଘୁମୁସର ଜମିଦାରୀକୁ ବ୍ରିଟିଶ ସାମ୍ରାଜ୍ୟ ଭୁକ୍ତ କଲେ । ଏହିପରି ସମଗ୍ର ଘୁମୁସର ଜମିଦାରୀ ଉଚ୍ଛେଦ ହୋଇ ଇଂରେଜ କମ୍ପାନୀ ସରକାରଙ୍କ ଅଧୀନରେ ଗଞ୍ଜାମ କଲେକ୍ଟର (ଜିଲ୍ଲାପାଳ) ଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ଶାସିତ ହେଲା । ମାତ୍ର ଘୁମୁସରରେ ଇଂରେଜ ବିରୋଧୀ ବିଦ୍ରୋହ ଖ୍ରୀ.ଅ. ୧୮୩୬ ରୁ ୧୮୫୬ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା ।

ଘୁମୁସରର ରାଜଭକ୍ତ ଜନସାଧାରଣ ଓ କନ୍ଧପ୍ରଜା ଇଂରେଜ ଶାସନ ବିରୋଧରେ ଅବିରାମ ବିଦ୍ରୋହ ଚଲାଇ ଥିଲେ । ଏହା ଘୁମୁସର ବିଦ୍ରୋହ ନାମରେ ଆଖ୍ୟାତ । ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ରକ୍ତ ରଞ୍ଜିତ ଇତିହାସରେ ବୀରତ୍ୱ ବ୍ୟଞ୍ଜକ ଘୁମୁସର ବିଦ୍ରୋହ ଏକ ରୋମାଞ୍ଚକର ତଥା ସ୍ୱର୍ଣ୍ଣିମ ଅଧ୍ୟାୟ । ୧୮୫୭ ମସିହାର ମହାନ ଜାତୀୟ ବିଦ୍ରୋହ ଆରମ୍ଭ ହେବାର ବହୁ ପୂର୍ବରୁ ସଂଗଠିତ ଘୁମୁସର ବିଦ୍ରୋହ ଜାତୀୟ ଜାଗରଣର ଆଦ୍ୟଝଲକ ରୂପେ ଜାଜ୍ୱଲ୍ୟମାନ ହୋଇରହିଛି । ଖ୍ରୀ.ଅ. ୧୮୩୬ ରୁ ୧୮୪୬ ଏବଂ ଖ୍ରୀ.ଅ. ୧୯୪୬ ରୁ ୧୮୫୬ ମଧ୍ୟରେ ଇଂରେଜ ଶକ୍ତି ବିରୋଧରେ ସଂଗଠିତ ଘୁମୁସର ବିଦ୍ରୋହର ନେତୃତ୍ୱ ନେଇଥିଲେ ଦୁଇଜଣ ମହାନ କନ୍ଧନେତା ଯଥାକ୍ରମେ ବୀର ପୁଙ୍ଗବ ଦୋରା ବିଷୋୟୀ ଏବଂ ବିପ୍ଳବୀ ବୀର ଚକ୍ର ବିଷୋୟୀ । ଏହି ଦୁଇଜଣ ସ୍ୱଦେଶ ପ୍ରେମୀ କନ୍ଧନେତାଙ୍କ ଅଦ୍ଭୁତ ସଂଗଠନ ଶକ୍ତି, ଅମିତ ପରାକ୍ରମ ଓ ଅସାଧାରଣ ରଣକୌଶଳ ତଥା ଗରିଲା ଯୁଦ୍ଧ ଇଂରେଜ ଶାସକ ଓ ସୈନ୍ୟ ବାହିନୀ କୁ ବ୍ୟତିବ୍ୟସ୍ତ କରିଦେଇଥିଲା । ଶେଷରେ ଇଂରେଜ ସରକାର ବହୁକଷ୍ଟରେ ଏହି ବିଦ୍ରୋହ ଦମନ କରିବାକୁ ସମର୍ଥ ହୋଇଥିଲେ ।

ଓଡ଼ିଆ ଭାଷାର ସୁରକ୍ଷା ଏବଂ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀ କରଣ ଆନ୍ଦୋଳନରେ ଘୁମୁସର ସକ୍ରିୟ ଭୂମିକା ଗ୍ରହଣ କରିଥିଲା । ୧୮୭୦ ମସିହା ସେପ୍ଟେମ୍ବର ମାସରେ ରସେଲ୍‌କୋଣ୍ଡା (ସାମ୍ପ୍ରତିକ ଭଞ୍ଜନଗର) ଠାରେ କାଟିଙ୍ଗା ରାଜା ଭେଙ୍କେଟେଶ ଦେଉଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଏକ ସଭାରେ ଘୁମୁସର ସମେତ ଗଞ୍ଜାମର ଅନ୍ୟାନ୍ୟ ଜମିଦାର ମାନେ ଓ ନେତୃସ୍ଥାନୀୟ ଓଡ଼ିଆ ଲୋକେ ସମ୍ମିଳିତ ହୋଇ ତେଲୁଗୁ ଭାଷାର ପ୍ରଚଳନ ଏବଂ ସରକାରୀ ଚାକିରିରେ ତେଲୁଗୁମାନଙ୍କ ଏକାଧିକାର ବିରୋଧରେ ସ୍ୱର ଉତ୍ତୋଳନ ପୂର୍ବକ ଗଞ୍ଜାମ ତଥା ଅନ୍ୟାନ୍ୟ ଓଡ଼ିଆ ଭାଷା ଭାଷୀ ଦକ୍ଷିଣାଞ୍ଚଳରେ ଓଡ଼ିଶା ଡ଼ିଭିଜନ (ବାଲେଶ୍ୱର, କଟକ, ପୁରୀ) ସହିତ ମିଶ୍ରଣ ପାଇଁ ଦାବି କରିଥିଲେ ।

ସାଂସ୍କୃତିକ କ୍ଷେତ୍ରରେ ଘୁମୁସର ଜମିଦାରୀର ଭୂମିକା ମହତ୍ତ୍ୱପୂର୍ଣ୍ଣ । ବିଶେଷତଃ ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଘୁମୁସର ର ଦାନ ଅଗ୍ରଗଣ୍ୟ । ଘୁମୁସର ରାଜବଂଶର ନିରବଚ୍ଛିନ୍ନ ସାହିତ୍ୟ ସାଧନା ଓଡ଼ିଆ କାବ୍ୟ ସାହିତ୍ୟ କୁ ପରିପୁଷ୍ଟ ଓ ମହିମାନ୍ୱିତ କରିଛି । ଏହି ରାଜବଂଶର ଯଶସ୍ୱୀ କବିମାନଙ୍କ ମଧ୍ୟରେ ଧନଞ୍ଜୟ ଭଞ୍ଜ, ଘନ ଭଞ୍ଜ, ଉପେନ୍ଦ୍ର ଭଞ୍ଜଙ୍କ କୃତି ଚିରସ୍ମରଣୀୟ । ଧନଞ୍ଜୟ ଭଞ୍ଜଙ୍କ ରଚିତ 'ମଦନ ମଞ୍ଜରୀ' ' ରତ୍ନମଞ୍ଜରୀ' 'ତ୍ରିପୁର ସୁନ୍ଦରୀ', 'ଅନଙ୍ଗ ରେଖା', ଇଚ୍ଛାବତୀ, 'ରଘୁନାଥ ବିଳାସ' ପ୍ରଭୃତି କାବ୍ୟଗ୍ରନ୍ଥ ଓଡ଼ିଆ କାବ୍ୟ ସାହିତ୍ୟକୁ ସମୃଦ୍ଧ କରିଛି । ରାଜକବି ଘନ ଭଞ୍ଜ 'ଗୋବିନ୍ଦ ବିଳାସ', 'ତ୍ରୈଲୋକ୍ୟ ମୋହିନୀ' ଓ 'ରସନିଧି'ରେ ସ୍ୱ କାବ୍ୟ ସାଧନା ଓ କବିତ୍ୱର ପରିଚୟ ଦେଇଛନ୍ତି । ଓଡ଼ିଆ କାବ୍ୟ ସାହିତ୍ୟକୁ ଘୁମୁସର ରାଜବଂଶର ସର୍ବଶ୍ରେଷ୍ଠ ଦାନ ହେଉଛନ୍ତି ଉପେନ୍ଦ୍ର ଭଞ୍ଜ । ରୀତିଯୁଗ ଓଡ଼ିଆ ସାହିତ୍ୟର

ପ୍ରାଣ ପ୍ରତିଷ୍ଠାତା ତଥା ଦୀପ୍ତିମାନ ଆଦିତ୍ୟ ଉପେନ୍ଦ୍ର ଭଞ୍ଜ 'ବୈଦେହୀଶ ବିଳାସ', 'ଲାବଣ୍ୟବତୀ', 'ପ୍ରେମସୁଧାନିଧି', 'ସୁଭଦ୍ରା ପରିଣୟ', କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ, 'ରସିକ ହାରାବଳୀ', 'କଳା କଉତୁକ', 'ରସ ଲେଖା' ପ୍ରଭୃତି କାବ୍ୟ ରଚନା ପୂର୍ବକ ନିଜର କବିତ୍ୱ, ପ୍ରବୀଣତ୍ୱ ଓ ରସିକତାର ପ୍ରମାଣ ରଖିଯାଇଛନ୍ତି ।

ଉପେନ୍ଦ୍ର ଭଞ୍ଜଙ୍କ ରଚନା ଶୈଳୀ ଓ କାବ୍ୟ କୌଶଳ ସମସାମୟିକ ତଥା ପରବର୍ତ୍ତୀ କବିଗଣଙ୍କ ରଚନାରେ ଦୀର୍ଘ ୨୫୦ ବର୍ଷ ଯାଏଁ ପ୍ରଭାବ ବିସ୍ତାର କରି ଆସିଥିଲା । ତାଙ୍କର ସାହିତ୍ୟ କୃତିର ପ୍ରଭାବ ଏଭଳି ସୁଦୂର ପ୍ରସାରିତ ହୋଇଥିଲା ଯେ ଓଡ଼ିଶାର ସମସ୍ତ ଅଞ୍ଚଳର ଶ୍ରେଷ୍ଠ କବିଗଣ ତାଙ୍କୁ କବିକୁଳ ଗୁରୁ ରୂପେ ଗ୍ରହଣ କରି ତାଙ୍କର ପଦାଙ୍କ ଅବଲମ୍ବନ କରିଥିଲେ । ଯଥାର୍ଥରେ ସେ କବିସମ୍ରାଟ ନାମରେ ପ୍ରଖ୍ୟାତ ।

ଭଞ୍ଜରାଜାଙ୍କ ପୃଷ୍ଠପୋଷକତାରେ ଶୈବ, ବୈଷ୍ଣବ, ଶାକ୍ତ, ସୌର ପ୍ରଭୃତି ଧର୍ମ ପ୍ରସାର ଲାଭ କରିଥିଲା । ବରଗାଁର ଦକ୍ଷିଣେଶ୍ୱର, କପିଳେଶ୍ୱର, ଧବଳେଶ୍ୱର ଓ ବାଲୁକେଶ୍ୱର ମନ୍ଦିର, କଇମାର କୁବେରେଶ୍ୱର ମନ୍ଦିର, ନାଇକ ପଡ଼ାର ଶିବମନ୍ଦିର, କୁଲାଡ଼ର ଜଗନ୍ନାଥ ମନ୍ଦିର ଓ ବାଗ୍‌ଦେବୀ ମନ୍ଦିର, ଗୁମାସର ଗଡ଼ (ଗୁମା ଗଡ଼) ର ଜଗନ୍ନାଥ ମନ୍ଦିର ଓ ସୌରପୀଠ ବିରଞ୍ଚିନାରାୟଣ ମନ୍ଦିର, ମାଳତୀଗଡ଼, ବୁଦ୍ଧ ଖୋଲର ପଞ୍ଚଶମ୍ଭୁ ମନ୍ଦିର ପ୍ରଭୃତି ଭଞ୍ଜକଳା ଓ ସ୍ଥାପତ୍ୟର ଉତ୍କୃଷ୍ଟ ନିଦର୍ଶନ । ବୁଗୁଡ଼ାସ୍ଥ ବିରଞ୍ଚିନାରାୟଣ ମନ୍ଦିର (ସୌରପୀଠ) ର ରାମାୟଣ ବିଷୟକ ଭିତ୍ତିଚିତ୍ର ଓ କାଠଖୋଦେଇ, ବେଲଗୁଣ୍ଠା ଜଗନ୍ନାଥ ମନ୍ଦିରର ରାମାୟଣ ଭିତ୍ତିଚିତ୍ର ଏବଂ ନେଟଙ୍ଗା ରାମସ୍ୱାମୀ ମନ୍ଦିରର ରାମପଟ୍ଟାଭିଷେକ କାଠ ଖୋଦେଇ ଓଡ଼ିଶାର କଳା ଜଗତକୁ ବୁଦ୍ଧିମନ୍ତ କରିଛି ।

ଘୁମୁସର ର ରାମଲୀଳା, କୃଷ୍ଣଲୀଳା, ଭାରତ ଲୀଳା, ଶିଂଘ ନାଟ, ଘଟନୃତ୍ୟ, ଦଣ୍ଡନାଟ, କଣ୍ଢେଇ ନାଚ, ଘୋଡ଼ାନାଚ, ବାଘନାଚ, ଧାଙ୍ଗଡ଼ା ଧାଙ୍ଗିଡ଼ୀ ନାଚ, କାଳିକା ନୃତ୍ୟ, ଶଉରା – ଶଉରୁଣୀ ନୃତ୍ୟ, ଚଢ଼େୟା ନୃତ୍ୟ, ବୁଗୁଡ଼ା ରାମଶିଆଳିର ବିଚିତ୍ର ଶଂଖ ବାଦନ ଓଡ଼ିଶାର ନୃତ୍ୟ କଳା ତଥା ଲୋକ ସଂସ୍କୃତିକୁ ସମୃଦ୍ଧ କରିଛି । ସେହିପରି ବେଲଗୁଣ୍ଠାର ପିତ୍ତଳ ଓ କାଠ ମାଛ, ଗୁଆ ଓ ଚାଉଳ ମୂର୍ତ୍ତି, ବଡ଼ କୋଦଣ୍ଡାର କାଠ କଣ୍ଢେଇ, ଭଞ୍ଜନଗରର କାଠ ମୂର୍ତ୍ତି, ବାଲିପଦରର କାରୁକାର୍ଯ୍ୟ ପୂର୍ଣ୍ଣ କାଠ ଆସବାବ ଓଡ଼ିଶାର କୁଟୀର ଶିଳ୍ପକୁ ଉନ୍ନତ କରିଛି ।

**ଖଲ୍ଲିକୋଟ :** ସାହିତ୍ୟ, କଳା ଓ ସ୍ଥାପତ୍ୟ, ଶିକ୍ଷାର ପ୍ରସାର, ସମ୍ବାଦ ପତ୍ର ପ୍ରକାଶନ ଏବଂ ସର୍ବୋପରି ଭାଷା ଆନ୍ଦୋଳନ, ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଖଲ୍ଲିକୋଟର ଭୂମିକା ଉଲ୍ଲେଖଯୋଗ୍ୟ ।

ଖଲ୍ଲିକୋଟର ମର୍ଦ୍ଦରାଜ ରାଜବଂଶ ଓଡ଼ିଆ ସାହିତ୍ୟର ବିକାଶରେ ସ୍ୱସାଧନାର ପରିଚୟ ଦେଇଛନ୍ତି । ରାଜସିଂହ ମର୍ଦ୍ଦରାଜଙ୍କ 'ରାଧାଷ୍ଟମୀ ବ୍ରତ', ଅନିରୁଦ୍ଧ ଛୋଟରାୟଙ୍କ 'କୃଷ୍ଣଜନ୍ମାଷ୍ଟମୀ ବ୍ରତ', ନଳିନାକ୍ଷ ମର୍ଦ୍ଦରାଜଙ୍କ 'ଲାବଣ୍ୟନିଧି କାବ୍ୟ', ଜଗନ୍ନାଥ ମର୍ଦ୍ଦରାଜଙ୍କ 'ବୈଶାଖ ମାହାତ୍ମ୍ୟ', ନାରାୟଣ ମର୍ଦ୍ଦରାଜଙ୍କ 'ରୁକ୍ମିଣୀ ଚିଟାଉ', 'ମହାରାହାସ', ଜଗଦମ୍ବାସ୍ତୁତି ; ହରିହର ମର୍ଦ୍ଦରାଜଙ୍କ 'ଦୁର୍ଗାମାଧବ ବିଳାସ' ପ୍ରଭୃତି ସାହିତ୍ୟ କୃତି ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ ଶ୍ରୀମନ୍ତ କରିଛି ।

ଖଲ୍ଲିକୋଟ ଗଡ଼ର ଜଗନ୍ନାଥ ମନ୍ଦିର ଓ ରାଧାକୃଷ୍ଣ ମନ୍ଦିର, ନିର୍ମଳ ଝରର ସୁନ୍ଦର କାରୁକାର୍ଯ୍ୟ ପୂର୍ଣ୍ଣ ନୀଳକଣ୍ଠେଶ୍ୱର, ବିମଳା, ରାଧାକୃଷ୍ଣ, ସୂର୍ଯ୍ୟ ଓ ଗଣେଶଙ୍କ ମନ୍ଦିର ଓ ବିଭିନ୍ନ ମଣ୍ଡପ, ବେଗୁନିଆ ପଡ଼ାର ସିଦ୍ଧେଶ୍ୱର, କୃଷ୍ଣଗିରି ପାଦଦେଶସ୍ଥ ଝାଡ଼େଶ୍ୱର, ମୁକ୍ତେଶ୍ୱର, ମଲ୍ଲିକେଶ୍ୱର, ରାମଚଣ୍ଡୀ, ଗୋପକୁଦାର ଗୋପେଶ୍ୱର (ଗୁପ୍ତେଶ୍ୱର ନାମରେ ମଧ୍ୟ ପ୍ରସିଦ୍ଧ), ବାଲୁଙ୍କୀ ଶରଣ ପୁରର ବିଲ୍ୱେଶ୍ୱର ଓ ବାରସର ଗ୍ରାମର ବାରେଶ୍ୱର ଆଦି ମନ୍ଦିର ଖଲ୍ଲିକୋଟ ରାଜବଂଶର କଳା ଓ ସ୍ଥାପତ୍ୟ କୃତି ।

ଖଲ୍ଲିକୋଟ ରାଜବଂଶର କେତେକ ଗୁଣବନ୍ତ, ଧୀବନ୍ତ, ଦେଶପ୍ରେମୀ ଓ ପ୍ରଜାବତ୍ସଳ ରାଜାଙ୍କ ମଧ୍ୟରେ ହରିହର ମର୍ଦ୍ଦରାଜ ଓ ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ନାମ ପ୍ରାତଃ ସ୍ମରଣୀୟ । ହରିହର ମର୍ଦ୍ଦରାଜ ଉତ୍କଳ ସମ୍ମିଳନୀ, ବିଚ୍ଛିନ୍ନାଞ୍ଚଳ ଓଡ଼ିଶାର ଏକତ୍ରୀକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ବୀଜ ବପନ କରିଥିଲେ । ସେ ଥିଲେ ଦେଶ ମିଶ୍ରଣ ଆନ୍ଦୋଳନର ପ୍ରଧାନ ଉଦ୍ୟୋକ୍ତା । ହରିହର ମର୍ଦ୍ଦରାଜ ୧୯୦୨ ମସିହାରେ ସ୍ୱୀୟ ରମ୍ଭା ପ୍ରାସାଦରେ ଉତ୍କଳ ଗୌରବ ମଧୁସୂଦନ ଦାସ, ମୟୂର ଭଞ୍ଜର ରାଜା ରାମଚନ୍ଦ୍ର ଭଞ୍ଜ, କବିବର ରାଧାନାଥ ରାୟ, ନୀଳମଣି ବିଦ୍ୟାରତ୍ନ, ଫକୀରମୋହନ ସେନାପତି, ପର୍ଶୁରାମ ପାତ୍ର, ଗଦାଧର ବିଦ୍ୟାଭୂଷଣ, ସଦାଶିବ ବିଦ୍ୟାଭୂଷଣ, ବଳରାମ ମହାରଣା, ନରସିଂହ ଦାସଙ୍କ ସମେତ ଗଞ୍ଜାମର ଅନ୍ୟାନ୍ୟ ରାଜା ଜମିଦାର ତଥା ଓଡ଼ିଶାର ବିଭିନ୍ନ ଅଞ୍ଚଳର ରାଜା, ମାନ୍ୟଗଣ୍ୟ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ଏକ ସମ୍ମିଳନୀର ଆୟୋଜନ କରିଥିଲେ । ଏହିଠାରେ ଗଞ୍ଜାମ ଜାତୀୟ ସମିତି ଗଠିତ ହୋଇଥିଲା । ଭାଷା ସୂତ୍ରରେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳରଏକତ୍ରୀକରଣ ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ କାର୍ଯ୍ୟ କରିବା ଥିଲା ଏହାର ଉଦ୍ଦେଶ୍ୟ । ରମ୍ଭାର ଏହି ପବିତ୍ର ମିଳନ ପୀଠକୁ ଏକ ଜାତୀୟ ଯଜ୍ଞପୀଠ ରୂପେ ମଧୁବାବୁ ସମ୍ମାନ ପ୍ରଦର୍ଶନ କରୁଥିଲେ ।

୧୯୦୩ ଏପ୍ରିଲ ମାସ ୧୧ ଓ ୧୨ ତାରିଖରେ ବ୍ରହ୍ମପୁରରେ ଅବିଭକ୍ତ ଗଞ୍ଜାମର ପ୍ରଥମ ଗ୍ରାଜୁଏଟ (ସ୍ନାତକ) ପାରଳା ଖେମୁଣ୍ଡି ନିବାସୀ ଶ୍ୟାମ ସୁନ୍ଦର ରାଜଗୁରୁଙ୍କ ସଭାପତିତ୍ୱରେ ଗଞ୍ଜାମ ଜାତୀୟ ସମିତିର ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ତାହା ଗଞ୍ଜାମ ଜାତୀୟ ସମ୍ମିଳନୀ ନାମରେ ଆଖ୍ୟାତ । ଏହି

ସମ୍ମିଳନୀରେ ହରିହର ମର୍ଦ୍ଦରାଜ ମଧୁବାବୁଙ୍କ ନେତୃତ୍ୱରେ ବୈଧାନିକ ପନ୍ଥାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସକାଶେ ଆନ୍ଦୋଳନ ଆରମ୍ଭ କରିବାକୁ ପ୍ରସ୍ତାବ ନେଇଥିଲେ । ପୁଣି ଏହି ସମ୍ମିଳନୀରେ ପ୍ରାକୃତିକ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ପ୍ରତିନିଧି ଯୋଗ ଦେଇଥିବାରୁ ଏହାର ନାମ 'ଉତ୍କଳ ସମ୍ମିଳନୀ' ରଖିବା ପାଇଁ ମଧୁବାବୁଙ୍କ ପ୍ରସ୍ତାବ ସର୍ବସମ୍ମତି କ୍ରମେ ଗୃହିତ ହୋଇଥିଲା । ଏହି ଗଞ୍ଜାମ ସମ୍ମିଳନୀରୁ ହିଁ ମଧୁବାବୁଙ୍କ ନେତୃତ୍ୱ ରେ ୧୯୦୩ ମସିହା ଡ଼ିସେମ୍ବର ମାସରେ ଜନ୍ମନେଲା ଓଡ଼ିଆ ଜାତିର ଏକମାତ୍ର ମିଳନ ମଣ୍ଡପ 'ଉତ୍କଳ ସମ୍ମିଳନୀ' ।

ଓଡ଼ିଆ ଭାଷାର ସୁରକ୍ଷା ଓ ପ୍ରସାର ନିମନ୍ତେ ହରିହର ମର୍ଦ୍ଦରାଜ 'ଖଲ୍ଲିକୋଟ ଇଷ୍ଟେଟ୍‌ପ୍ରେସ୍' ନାମକ ଏକ ଛାପାଖାନା ପ୍ରତିଷ୍ଠା କରିଥିଲେ । ପରେ ଏହା 'ମର୍ଦ୍ଦରାଜ ପ୍ରେସ୍', ନାମରେ ନାମିତ ହେଲା । ଏହି ପ୍ରେସ୍‌ରୁ ହରିହର ମର୍ଦ୍ଦରାଜଙ୍କ ପୃଷ୍ଠ ପୋଷକତା ଏବଂ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ୧୯୦୨ ମସିହା ଜୁନ୍‌ମାସରୁ 'ପ୍ରଜାବନ୍ଧୁ' ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ ପାଇଲା । ଏହି ପତ୍ରିକାଟି ଦେଶ ମିଶ୍ରଣ ଆନ୍ଦୋଳନ ପ୍ରତି ଜନସାଧାରଣଙ୍କ ମଧରେ ସଚେତନତା ସୃଷ୍ଟି କରିଥିଲା । କାଳକ୍ରମେ ଏହି ପ୍ରେସ୍‌ରୁ 'ଉତ୍କଳ ମଧୁ', ଓ 'ସଂସ୍କାରକ' ନାମରେ ପତ୍ରିକା ପ୍ରକାଶିତ ହେଲା ।

ଶିକ୍ଷାର ଉନ୍ନତି କଳ୍ପେ ହରିହର ମର୍ଦ୍ଦରାଜ ଅନେକ ବିଦ୍ୟାଳୟ ଓ ସଂସ୍କୃତ ଟୋଲ ପ୍ରତିଷ୍ଠା କରିଥିଲେ । ବ୍ରହ୍ମପୁରସ୍ଥ ଖଲ୍ଲିକୋଟ କଲେଜକୁ ନିଜ ନାମରେ ନାମିତ ନକରି ନିଜ ଜମିଦାରୀର ନାମରେ ନାମିତ କରିବା ସକାଶେ ସେ ଏକଲକ୍ଷଟଙ୍କା ଦାନ କରିଥିଲେ । ସେ ୧୮୯୩ ରୁ ୧୯୦୯ ପର୍ଯ୍ୟନ୍ତ ଖଲ୍ଲିକୋଟ କଲେଜ ପରିଚାଳନା କମିଟିର ମୁଖ୍ୟ ରୂପେ ରହିଥିଲେ । ସେ ବ୍ରହ୍ମପୁରରେ ଟାଉନ୍‌ହଲ୍ ପ୍ରତିଷ୍ଠା କରିଥିଲେ ।

ହରିହର ମର୍ଦ୍ଦରାଜଙ୍କ ସୁଯୋଗ୍ୟ ପୁତ୍ର ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ୧୯୨୨ ରୁ ୧୯୩୭ ପର୍ଯ୍ୟନ୍ତ 'ଅବିଭକ୍ତ ଗଞ୍ଜାମ ଜିଲ୍ଲା ବୋର୍ଡ଼ର ସଭାପତି ରୂପେ ତାଙ୍କ ଜମିଦାରୀ ସମେତ ଜିଲ୍ଲାର ବିଭିନ୍ନ ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତି କରାଇଥିଲେ । ୧୯୧୯ ଦୁର୍ଭିକ୍ଷର ସେ ଦୃଢ଼ ମୁକାବିଲା କରିଥିଲେ । ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ ରେ ତାଙ୍କର ଭୂମିକା ଉଲ୍ଲେଖନୀୟ । ୧୯୨୪ ରେ ଫିଲିପ୍‌ଡ଼ଫ୍ କମିଟିକୁ ରାମଚନ୍ଦ୍ର ମର୍ଦ୍ଦରାଜ ରମ୍ଭା ଠାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଏକ ସ୍ମାରକ ପତ୍ର ଦେବା ସଙ୍ଗେ ସଙ୍ଗେ ବହୁ ଉପାଦେୟ ତଥ୍ୟ ଯୋଗାଇ ଦେଇଥିଲେ । ୧୯୨୭ ରେ ରମ୍ଭା ରାଜପ୍ରାସାଦରେ ମହାତ୍ମାଗାନ୍ଧୀ ତାଙ୍କର ଆତିଥ୍ୟ ଗ୍ରହଣ କରିଥିଲେ । ରାମଚନ୍ଦ୍ର ମର୍ଦ୍ଦରାଜ ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଓ ଅନ୍ୟାନ୍ୟ ନେତୃ ସ୍ଥାନୀୟ ବ୍ୟକ୍ତିଙ୍କର ସହ ୧୯୩୧ ରେ ଓ

ଡ଼ୋନେଲ୍ କମିଟି ବା ଓଡ଼ିଶା ସୀମା ନିର୍ଦ୍ଧାରଣ କମିଟି ସହିତ ସାକ୍ଷାତ କରିଥିଲେ । ସେ ସମଗ୍ର ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ସହ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବାକୁ କମିଟି ଆଗରେ ଦାବି କରିଥିଲେ । ୧୯୩୨ ରେ ଲଣ୍ଡନରେ ତୃତୀୟ ଗୋଲ ଟେବୁଲ୍ ବୈଠକରେ ଯୋଗଦେଇ ରାମଚନ୍ଦ୍ର ମର୍ଦ୍ଦରାଜ ଓଡ଼ିଶା ପାଇଁ ସ୍ୱତନ୍ତ୍ର ପ୍ରଦେଶର ଆବଶ୍ୟକତା ସହିତ ଗଞ୍ଜାମର ଉପାନ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ତଥା ଜମିଦାରୀ ଗୁଡ଼ିକର ମିଶ୍ରଣ ସପକ୍ଷରେ ଯୁକ୍ତି ଯୁକ୍ତ କାରଣ ସନ୍ନିବେଶିତ ସାରଗର୍ଭକ ଭାଷଣ ପ୍ରଦାନ କଲେ । ଫଳରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରକ୍ରିୟା ଚୂଡ଼ାନ୍ତ ହେଲା । ବ୍ରିଟିଶ ସରକାର ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ସ୍ଥିର କଲେ । ଏ ସମ୍ବାଦ ପାଇବା ମାତ୍ରେ ପାରଳାଖେମୁଣ୍ଡି ର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ତାରବାର୍ତ୍ତା ପ୍ରେରଣ କରି ଲଣ୍ଡନରେ ଥିବା ରାମଚନ୍ଦ୍ର ମର୍ଦ୍ଦରାଜଙ୍କୁ ଅଭିନନ୍ଦନ ଜଣାଇଥିଲେ । 'ପ୍ରିୟ ଖଲିକୋଟ ! ଓଡ଼ିଆ ମାନଙ୍କ ପାଇଁ ତୁମର ଅତ୍ୟନ୍ତ ବିସ୍ମୟକର ଓ ଐତିହାସିକ କୃତି ସକାଶେ ମୋର ହାର୍ଦ୍ଦିକ ଅଭିନନ୍ଦନ ଗ୍ରହଣ କର ।' ଇତି ମଧ୍ୟରେ ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କ ଅଧ୍ୟକ୍ଷତାରେ ଗଠିତ ଜଏଣ୍ଟ୍ ପାର୍ଲ୍ୟାମେଣ୍ଟାରୀ କମିଟି ଆଗରେ ସେ ସାକ୍ଷ୍ୟ ପ୍ରଦାନ କଲାବେଳେ ପାରଳାଖେମୁଣ୍ଡି ଓ ଜୟପୁରକୁ ଓଡ଼ିଶାରେ ମିଶାଇବା ପାଇଁ କେତେକ ପ୍ରାମାଣିକ ଓ ବଳିଷ୍ଠ ତଥ୍ୟ ଯୋଗାଇ ଦେଇଥିଲେ । ତଥାପି ଜୟପୁର ଓ ପାରଳାର ବହୁ ଅଞ୍ଚଳ ମାନ୍ଦ୍ରାଜରେ ରହିଗଲା ।

ରାମଚନ୍ଦ୍ର ମର୍ଦ୍ଦରାଜ ଲବଣ ଶିଳ୍ପର ଉନ୍ନତି ସାଧନ କରିଥିଲେ । ଫାସୁଲାର ପଥର ଖୋଦେଇ, କଞ୍ଚଣା ଓ ପୁଷ୍ପପୁରର ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ ଚାନ୍ଦୁଆଶିଳ୍ପ ପାଇଁ ଖଲ୍ଲିକୋଟ ଜମିଦାରୀ ପ୍ରସିଦ୍ଧି ଲାଭ କରିଥିଲା ।

**ଆଠଗଡ଼ :** ପୁରୀର ପ୍ରଭୁ ଶ୍ରୀଜଗନ୍ନାଥ ଏବଂ ଖୋର୍ଦ୍ଧା ରାଜ୍ୟ ସହିତ ଘନିଷ୍ଠ ସମ୍ବନ୍ଧ ହେତୁ ଆଠଗଡ଼ ଜମିଦାରୀ ଓଡ଼ିଶାର ଇତିହାସ ଓ ସଂସ୍କୃତିରେ ଏକ ବିଶେଷ ସ୍ଥାନ ଅଧିକାର କରିଛି । ସାହିତ୍ୟ ଓ ସଂସ୍କୃତିକୁ ଆଠଗଡ଼ର ଅବଦାନ କମ ନୁହେଁ । ଆଠଗଡ଼ର ରାଜା ମଧୁସୂଦନ ଜଗଦ୍ଦେବଙ୍କ 'ବୈଶାଖୀ ମାହାତ୍ମ୍ୟ' ଏକ ଅମର ସାହିତ୍ୟ କୃତି । କବିସୂର୍ଯ୍ୟ ବଳଦେବ ରଥ ନିଜର ଅଗାଧ ପାଣ୍ଡିତ୍ୟ ହେତୁ ଆଠଗଡ଼ ରାଜଦରବାରରେ ସମ୍ମାନିତ ହୋଇଥିଲେ । ଉତ୍କଳଘଣ୍ଟ ଯଦୁମଣି ମହାପାତ୍ର, ନୀଳାଦ୍ରି ମିଶ୍ର, ବ୍ରଜସୁନ୍ଦର ଦାସ, କବିଚନ୍ଦ୍ର ଚନ୍ଦ୍ରଶେଖର ରାୟଗୁରୁ ପ୍ରଭୃତି କବିମାନେ ଆଠଗଡ଼ ରାଜସଭା ମଣ୍ଡନ କରିଥିଲେ ।

ଆଠଗଡ଼ ଜମିଦାରୀର ଲଙ୍ଗଳ ବେଣୀ ଦୁର୍ଗ ଓ ତନ୍ମଧ୍ୟସ୍ଥ ଜଗନ୍ନାଥ ମନ୍ଦିର, ମାରଦାର ଜଗନ୍ନାଥ ମନ୍ଦିର, ବାଲିଛେଳିର ଜଗନ୍ନାଥ ମନ୍ଦିର, ପୋଲୋସରା ନିକଟ ଜିଲୁଣ୍ଡାର ମହାଲିଙ୍ଗେଶ୍ୱର ମନ୍ଦିର ପ୍ରଭୃତି ପ୍ରତ୍ନତାତ୍ତ୍ୱିକ ଦୃଷ୍ଟି କୋଣରୁ ମହତ୍ତ୍ୱପୂର୍ଣ୍ଣ । ବିଶେଷତଃ ମାରଦାର ଜଗନ୍ନାଥ ମନ୍ଦିର ସକାଶେ ଆଠଗଡ଼ ପ୍ରସିଦ୍ଧ ।

କଟକର ନାଏବ୍ ନାଜିମ୍ ତକି ଖାଁ ତାଙ୍କ ଶାସନ କାଳ (ଖ୍ରୀ.ଅ. ୧୭୧୭ – ୧୭୩୪) ରେ ବାରମ୍ବାର ଖୋର୍ଦ୍ଧା ରାଜ୍ୟ ଏବଂ ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିଲେ । ୧୭୩୧ ରେ ତକି ଖାଁଙ୍କ ଆକ୍ରମଣ ହେତୁ ଖୋର୍ଦ୍ଧାର ଗଜପତି ରାଜା ଦ୍ୱିତୀୟ ରାମଚନ୍ଦ୍ର ଆଠଗଡ଼ ର ରୁମାଗଡ଼ ଦୁର୍ଗରେ ଆଶ୍ରୟ ନେଇଥିଲେ । ତକିଖାଁଙ୍କ ଆକ୍ରମଣ ରୁ ପୁରୀର ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ବିଗ୍ରହଙ୍କୁ ସୁରକ୍ଷା ନିମନ୍ତେ ପୁରୀରୁ ଅଣାଯାଇ ଆଠଗଡ଼ର ଘନଜଙ୍ଗଲ ପରିବେଷ୍ଟିତ ହାତିବାଡ଼ି ପାହାଡ଼ ପାଦ ଦେଶରେ ମାରଦା ଠାରେ ରଖାଯାଇ ଥିଲା । ସେଠାରେ ଆଠଗଡ଼ର ରାଜା ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ ଦେଉଳ ତୋଳାଇ ତହିଁରେ ତିନି ଠାକୁରଙ୍କୁ ସୁରକ୍ଷିତ କରାଇଥିଲେ । ମାରଦା ମନ୍ଦିରରେ ଶ୍ରୀ ବିଗ୍ରହମାନେ ପ୍ରାୟ ଅଢ଼େଇ ବର୍ଷ ପୂଜା ପାଇଥିଲେ । ବିପତ୍ତି ବେଳେ ଶ୍ରୀ ବିଗ୍ରହମାନଙ୍କୁ ଶରଣ ଦେଇଥିବାରୁ ଆଠଗଡ଼ର 'ମାରଦା' ଶରଣ ଶ୍ରୀକ୍ଷେତ୍ର ନାମରେ ଖ୍ୟାତ ହେଲା । ପୁରୀର ଗୋଟିଏ ଅଞ୍ଚଳ ଆଠଗଡ଼ ରାଜାଙ୍କୁ ଉପହାର ଦିଆଗଲା । ଅଧୁନା ତାହା ଆଠଗଡ଼ିଆ ସାହି ନାମରେ କଥିତ । ମୁକ୍ତି ମଣ୍ଡପର ଗୋଟିଏ ସ୍ତମ୍ଭ 'ଆଠଗଡ଼ ସ୍ତମ୍ଭ' ନାମରେ ନାମିତ ହେଲା । ଆଠଗଡ଼ ରାଜସଭାର ପଣ୍ଡିତ ମୁକ୍ତି ମଣ୍ଡପରେ ସ୍ଥାନ ପାଇଲେ । ଆଠଗଡ଼ ରାଜାଙ୍କୁ କୃତଜ୍ଞତା ସ୍ୱରୂପ ଶ୍ରୀମନ୍ଦିରରେ ସ୍ୱତନ୍ତ୍ର ସ୍ୱାଧିକାର ଓ ଗୌରବ ମିଳିଥିଲା । ଅତଏବ ଓଡ଼ିଶାର ଇତିହାସ ଓ ସଂସ୍କୃତିରେ ଆଠଗଡ଼ର ସ୍ଥାନ ମହତ୍ତ୍ୱପୂର୍ଣ୍ଣ ।

**ଧରାକୋଟ :** ଧରାକୋଟ ଜମିଦାରୀର ସାଂସ୍କୃତିକ ଅବଦାନ ଗୌରବାବହ । ଧରାକୋଟ ରାଜବଂଶର ପୃଷ୍ଠପୋଷକତାରେ ବହୁ ଓଡ଼ିଆ କାବ୍ୟ କବିତା ରଚିତ ହୋଇଥିଲା । ଧରାକୋଟର ରାଜକବି ରାଜସିଂହଙ୍କ 'କ୍ଷେତ୍ର ମାହାତ୍ମ୍ୟ' ଓ 'ଭଗବଦ୍‌ଗୀତା', ରାଜା କୃଷ୍ଣସିଂହଙ୍କ ଅସଂଖ୍ୟ ଚଉପଦୀ ଓ ଓଡ଼ିଆ ମହାଭାରତ, ଦାମୋଦର ସିଂହଙ୍କ 'ଉତ୍କଣ୍ଠା ମାଳିକା', ରାଜା ରଘୁନାଥ ସିଂହଙ୍କ 'ରାମଲୀଳା' ପ୍ରଭୃତି ଗ୍ରନ୍ଥ ଓଡ଼ିଶାର ବାଣୀ ଭଣ୍ଡାରକୁ ଅଳଙ୍କୃତ କରିଛି । ବିଶେଷତଃ ସଂସ୍କୃତ ମହାଭାରତ ଅନୁସରଣରେ ରାଜା କୃଷ୍ଣସିଂହଙ୍କ ଓଡ଼ିଆରେ ରଚିତ ମହାଭାରତ ଏକ ପ୍ରସିଦ୍ଧ ଗ୍ରନ୍ଥ ।

ଊନବିଂଶ ଶତାବ୍ଦୀର ତୃତୀୟ ଦଶକରେ ଧରାକୋଟ ରାଜାଙ୍କ ଝିଆରୀ ବିଷ୍ଣୁମାଳୀ ଦେବୀ ଖଣ୍ଡପଡ଼ା ରାଜା ଶ୍ୟାମବନ୍ଧୁ ସିଂହଙ୍କୁ ବିବାହ କରିଥିଲେ । ସେମାନଙ୍କ ଔରସରୁ ୧୮୩୫ ମସିହାରେ ଜନ୍ମ ହୋଇଥିଲେ ସାମନ୍ତ ଚନ୍ଦ୍ରଶେଖର ସିଂହ । ସେ ପଠାଣି ସାମନ୍ତ ନାମରେ ବିଖ୍ୟାତ । ସେ ଧରାକୋଟରେ ମାମୁଘରେ ରହି ପ୍ରାୟ ୧୦ବର୍ଷ ବୟସ ବେଳକୁ ଧରାକୋଟର ପଣ୍ଡିତମାନଙ୍କ ସାହାଯ୍ୟରେ ବିଭିନ୍ନ ଧର୍ମଗ୍ରନ୍ଥ, କାବ୍ୟ, ବ୍ୟାକରଣ, ଗଣିତ, ଜ୍ୟୋତିଷ ଅଧ୍ୟୟନ କରିଥିଲେ । ଏହାପରେ ସେ ଖଣ୍ଡପଡ଼ା ଫେରି ତାଙ୍କ

ମାମୁ ବ୍ରଜକିଶୋର ସିଂହଙ୍କ ରାଜତ୍ୱକାଳ (ଖ୍ରୀ.ଅ.୧୮୭୨-୧୮୮୪)ରେ ତାଙ୍କର 'ସିଦ୍ଧାନ୍ତ ଦର୍ପଣ' ରଚନା କରିଥିଲେ । ସାମନ୍ତ ଚନ୍ଦ୍ରଶେଖରଙ୍କ କୃତିତ୍ୱ ପାଇଁ ଧରାକୋଟ ରାଜବଂଶର ଅବଦାନ ଅଗ୍ରଗଣ୍ୟ ।

ଧରାକୋଟରେ ରାଜପୃଷ୍ଠପୋଷକତାରେ ବହୁ ଶୈବ, ବୈଷ୍ଣବ ଓ ଶାକ୍ତ ମନ୍ଦିର ନିର୍ମିତ ହୋଇଥିଲା । ଧରାକୋଟ ରାଜପ୍ରାସାଦରେ ଶୋଭା ପାଉଥିବା କାଠ ଖୋଦେଇରେ ରାମପଟ୍ଟା ଭିଷେକ କଥାବସ୍ତୁକୁ ଅତ୍ୟନ୍ତ ମାର୍ମିକ ଭାବେ ଦର୍ଶାଯାଇଛି । ଧରାକୋଟର ରାଜାମାନେ ସ୍ଥାୟୀ ଏକମୁଖୀ ରଙ୍ଗମଞ୍ଚମାନ ନିର୍ମାଣ କରି ସେଠାରେ ନାଟକ ପ୍ରଦର୍ଶନ କରାଇଥିଲେ । ସେଗୁଡ଼ିକ ମଧ୍ୟରେ କେଶରୀ ରଙ୍ଗମଞ୍ଚ, ରାଧାକୃଷ୍ଣ ରଙ୍ଗାଳୟ (୧୯୧୮ମସିହା) ପ୍ରସିଦ୍ଧ । ଏହିପରି ଓଡ଼ିଶାର ନାଟକ ପରମ୍ପରାକୁ ମଧ୍ୟ ଧରାକୋଟ ସମୃଦ୍ଧ କରିଛି । ଶିକ୍ଷାର ଉନ୍ନତି କଳ୍ପେ ରାଜା ମଦନମୋହନ ସିଂହ (୧୮୮୪-୧୯୩୭) ଅନେକ ପଦକ୍ଷେପ ନେଇଥିଲେ । ତାଙ୍କର ଆର୍ଥିକ ସହାୟତାରେ 'ଶ୍ରୀ ରାଜାଙ୍କ ହାଇସ୍କୁଲ', ସଂସ୍କୃତ ଟୋଲ, ଶିଳ୍ପ ବିଦ୍ୟାଳୟ, ବ୍ରହ୍ମପୁରସ୍ଥ ଖଲ୍ଲିକୋଟ କଲେଜର ବିଜ୍ଞାନାଗାର ସ୍ଥାପିତ ହୋଇଥିଲା । ସେ ମାନ୍ଦ୍ରାଜ ବିଧାନସଭାରେ ଗଞ୍ଜାମ ଜୟପୁର ମିଶ୍ରଣ ପ୍ରସ୍ତାବ ଉପସ୍ଥାପନ କରିଥିଲେ । ଓଷାକୋଠି ଓ ଗାହଣୀ ତଥା ହାତ ତିଆରି କାଗଜ ପାଇଁ ଧରାକୋଟ ଥିଲା ପ୍ରସିଦ୍ଧ ।

**ଶେରଗଡ଼ :** ଶେରଗଡ଼ର ସ୍ୱାଧୀନଚେତା ରାଜା ଅଦ୍ୱୈତ ସିଂହଦେଓ ଇଂରେଜମାନଙ୍କ ବିରୋଧରେ ଲଢ଼ି ପ୍ରାଣ ହରାଇଥିଲେ । ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ ଶେରଗଡ଼ର ରାଜା ହରିକୃଷ୍ଣ ସିଂହଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ତେଣୁ ୧୮୧୭ର ପାଇକ ବିଦ୍ରୋହକୁ ଶେରଗଡ଼ର ପରୋକ୍ଷ ସମର୍ଥନ ମିଳିଥିଲା । ଶେରଗଡ଼ ରାଜା ଶୋଭାଚନ୍ଦ୍ର ସିଂହଦେଓ ଦେଶ ମିଶ୍ରଣ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ସେ ଖଲ୍ଲିକୋଟ କଲେଜରେ ଶେରଗଡ଼ ହଲ୍ ନିର୍ମାଣ ପାଇଁ ଅର୍ଥ ଓ ବ୍ରହ୍ମପୁରର ଉତ୍କଳ ଆଶ୍ରମ ନିମନ୍ତେ ଜମି ଦାନ କରିଥିଲେ । ଶେରଗଡ଼ ପ୍ରହଲ୍ଲାଦ ନାଟକ, ଭାରତଲୀଳା, ଦାସକାଠିଆ ପାଇଁ ପ୍ରସିଦ୍ଧ ।

**ବଡ଼ଖେମୁଣ୍ଡି :** ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ, ଶିକ୍ଷା, ସ୍ୱାଧୀନତା ସଂଗ୍ରାମ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆଦିକ୍ଷେତ୍ରରେ ବଡ଼ଖେମୁଣ୍ଡି ଜମିଦାରୀର ଅବଦାନ ସ୍ମରଣଯୋଗ୍ୟ । ବଡ଼ଖେମୁଣ୍ଡି ରାଜବଂଶର ପୃଷ୍ଠପୋଷକତାରେ ବହୁଶାସ୍ତ୍ରଜ୍ଞ ପଣ୍ଡିତ, କବି ଓ ସାହିତ୍ୟିକ ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ଗ୍ରନ୍ଥଭଣ୍ଡାର ପରିପୂର୍ଣ୍ଣ କରିଛନ୍ତି । ସେମାନଙ୍କ ମଧ୍ୟରେ 'ଯମକ ଭାଗବତ ମହାକାବ୍ୟମ୍', 'ସଙ୍ଗୀତ ନାରାୟଣ'ର ସ୍ରଷ୍ଟା ପୁରୁଷୋତ୍ତମ ମିଶ୍ର,

'ରାମାଭ୍ୟୁଦୟ', 'ଗୁଣ୍ଡିଚା ବିଜୟ', ସଙ୍ଗୀତ ସରଣୀର ପ୍ରଣେତା ନାରାୟଣ ମିଶ୍ର, 'ଅବ୍‌ଦଦୂତ' ନାମକ ଖଣ୍ଡକାବ୍ୟର କବି କୃଷ୍ଣ ଶ୍ରୀଚନ୍ଦନ, 'ଗଙ୍ଗବଂଶାନୁଚରିତମ୍'ର ପ୍ରଣେତା ବାସୁଦେବ ରଥ ସୋମଯାଜୀ, 'କିଶୋର ଚନ୍ଦ୍ରାନନ ଚମ୍ପୂ'ର ପ୍ରଖ୍ୟାତଯଶା କବି କବିସୂର୍ଯ୍ୟ ବଳଦେବ ରଥ, 'ରସକଳ୍ପଲତା' କାବ୍ୟର ରଚୟିତା ବ୍ରଜସୁନ୍ଦର ପଟ୍ଟନାୟକ, 'ହରିଶ୍ଚନ୍ଦ୍ର', 'ପ୍ରେମଲତା' ପ୍ରଭୃତି ନାଟକ ତଥା 'ବାସନ୍ତୀ', 'ଶ୍ରୀରାମ ତତ୍ତ୍ୱସାର' ପ୍ରଭୃତି କାବ୍ୟ ଓ ଭଜନାବଳୀର ପ୍ରଣେତା କବିଚନ୍ଦ୍ର ରାଜଗୁରୁ ପ୍ରଭୃତିଙ୍କ ନାମ ଏଠାରେ ଉଲ୍ଲେଖଯୋଗ୍ୟ । ପୁରୁଷୋତ୍ତମ ମିଶ୍ରଙ୍କ ରଚିତ 'ସଙ୍ଗୀତ ନାରାୟଣ' ଶୀର୍ଷକ ସଙ୍ଗୀତ ଗ୍ରନ୍ଥଟି ଅଦ୍ୟାପି ଓଡ଼ିଶାର ପ୍ରାମାଣିକ ସଂଗୀତ ଶାସ୍ତ୍ର ରୂପେ ସଙ୍ଗୀତଜ୍ଞମାନଙ୍କ ଦ୍ୱାରା ଗୃହୀତ ହୋଇଛି ।

ବଡ଼ଖେମୁଣ୍ଡି ରାଜପରିବାରର ମହାନ୍ ଦାନ ହେଉଛନ୍ତି ଯୁବରାଜ ବଳଭଦ୍ରଦେବ ଓରଫ ବୀରଭଦ୍ରଦେବ । ସେ ଥିଲେ ରାଜା ପଦ୍ମନାଭ ଦେବ (ଖ୍ରୀ.ଅ. ୧୭୫୭–୧୭୭୬)ଙ୍କ ଜ୍ୟେଷ୍ଠପୁତ୍ର । ସିଂହାସନ ଆରୋହଣ କରିବା ପରିବର୍ତ୍ତେ ବୀରଭଦ୍ର ମାତ୍ର ୧୮ ବର୍ଷ ବୟସରେ ଗୌତମ ବୁଦ୍ଧଙ୍କ ସମ ଗୃହତ୍ୟାଗ କରି ସନ୍ନ୍ୟାସୀ ହୋଇଯାଇଥିଲେ । ପରବର୍ତ୍ତୀ ସମୟରେ ସେ ମହାପୁରୁଷ ଅରକ୍ଷିତ ଦାସ ନାମରେ ପ୍ରଖ୍ୟାତ ହେଲେ । ସେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ପ୍ରଚାର କରିଥିଲେ ନିରାକାର ଧର୍ମର ବାଣୀ । ଜାତି, ଅଜାତି ଭେଦଭାବ, ପ୍ରତିମା ପୂଜା, ଯାଗଯଜ୍ଞର ସେ ଥିଲେ ବିରୋଧୀ ।

ଅରକ୍ଷିତ ଦାସଙ୍କ ସାଧନାପୀଠ ଥିଲା ଯାଜପୁର ଜିଲ୍ଲା ବଡ଼ଚଣା ବ୍ଲକର ପଲାଇ ମୌଜାରେ ଅବସ୍ଥିତ ଓଳାଶୁଣୀ ଗୁମ୍ଫା । ସେଠାରେ ସେ ସିଦ୍ଧିଲାଭ କରି ସମାଧିପ୍ରାପ୍ତ ହୋଇଥିଲେ । ପ୍ରତିବର୍ଷ ତାଙ୍କର ସମାଧି ଦିବସ ମାଘ କୃଷ୍ଣ ଏକାଦଶୀ ତିଥିରେ ପାଳିତ ହୁଏ ଓଳାଶୁଣୀ ଗୁମ୍ଫାଯାତ୍ରା । ତାଙ୍କ ରଚିତ ମହୀମଣ୍ଡଳ ଗୀତା, ବ୍ରହ୍ମାଣ୍ଡ ଗୀତା, ଭକ୍ତିଟୀକା, ଅବଧୂତ ସଂହିତା ଓ ଶତାଧିକ ଭଜନ ଓଡ଼ିଆ ଭକ୍ତି ସାହିତ୍ୟକୁ ପରିପୁଷ୍ଟ କରିଛି ।

ବଡ଼ଖେମୁଣ୍ଡିର ରାଜା କୃପାମୟ ଅନଙ୍ଗଭୀମଦେବ (ଖ୍ରୀ.ଅ.୧୮୯୮–୧୯୨୨)ଙ୍କ କୃତିତ୍ୱ ଥିଲା ମହନୀୟ । ତାଙ୍କଦ୍ୱାରା ପ୍ରତିଷ୍ଠିତ ଗଜପତି ଭୀମଦେବ ପ୍ରେସ୍‌ରୁ ପ୍ରଥମେ ମାର୍କଣ୍ଡେୟ ତର୍କପଞ୍ଚାନନ ଓ ପରେ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ 'ଗଞ୍ଜାମ ଗୁଣଦର୍ପଣ' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ ପାଉଥିଲା । ଏହି ପତ୍ରିକା ମାଧ୍ୟମରେ ସେ ଓଡ଼ିଆ ଭାଷାଭାଷୀଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ ସପକ୍ଷରେ ଦୃଢ଼ ଜନମତ ଉଦ୍ରେକ କରିଥିଲେ । ଶିକ୍ଷାର ଉନ୍ନତି ନିମନ୍ତେ ସେ ନିଜ ଜମିଦାରୀରେ

ବାଳକ ଓ ବାଳିକାଙ୍କ ନିମନ୍ତେ ବିଦ୍ୟାଳୟ, ସଂସ୍କୃତ ଟୋଲ୍, ପ୍ରୌଢ଼ ଓ ଶ୍ରମିକମାନଙ୍କ ଶିକ୍ଷା ନିମନ୍ତେ ୧୯୦୪ରେ ଏକ ନୈଶ୍ୟ ବିଦ୍ୟାଳୟ ସ୍ଥାପନ କରିଥିଲେ । ଏହା ବ୍ୟତୀତ ଗଞ୍ଜାମର ରାଜପରିବାର ଗୁଡ଼ିକର ଶିକ୍ଷା ନିମନ୍ତେ ସେ ୬୦୦୦ ଟଙ୍କା ବ୍ୟୟରେ ବ୍ରହ୍ମପୁର ଠାରେ ରାଜକୁମାର ସ୍କୁଲ ପ୍ରତିଷ୍ଠା କରିଥିଲେ । ଏହି ସ୍କୁଲ ବନ୍ଦ ହୋଇଯିବାପରେ ସେ ସ୍କୁଲର କୋଠା ଖଲ୍ଲିକୋଟ କଲେଜ କର୍ତ୍ତୃପକ୍ଷଙ୍କୁ ଦାନ କରିଥିଲେ । ଏହି କୋଠାରେ ବର୍ତ୍ତମାନ ଖଲ୍ଲିକୋଟ ଜୁନିୟର କଲେଜ କାର୍ଯ୍ୟ କରୁଛି । ସେ ଖଲ୍ଲିକୋଟ କଲେଜର ଭିକ୍ଟୋରିଆ ମେମୋରିଆଲ୍ ଛାତ୍ରୀନିବାସ (ଅଧୁନା ଝାନ୍ସୀ ରାଣୀ ଛାତ୍ରୀନିବାସ) ଓ ଖେଳପଡ଼ିଆ ନିର୍ମାଣ, ମ୍ୟାକ୍ ମାଇକେଲ୍ ପାର୍ଣ୍ଣଲେଣ୍ଡ୍ ଛାତ୍ରବୃତ୍ତି ପ୍ରଭୃତି ସକାଶେ ମୁକ୍ତହସ୍ତରେ ଅର୍ଥଦାନ କରିଥିଲେ । ଆହୁରି ମଧ୍ୟ ସେ ଗୋପବନ୍ଧୁଙ୍କ ସତ୍ୟବାଦୀ ବନ ବିଦ୍ୟାଳୟ, ସମାଜ ପତ୍ରିକା, ଆଶା ପ୍ରେସ୍ ଓ ଦୈନିକ ଆଶା ପ୍ରକାଶନ, ଉତ୍କଳ ସମ୍ମିଳନୀକୁ ଅର୍ଥଦାନ କରିଥିଲେ । ତାଙ୍କରି ଅଧ୍ୟକ୍ଷତାରେ ୧୯୦୬ ମସିହାରେ ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀର ଚତୁର୍ଥ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ବ୍ରହ୍ମପୁରରେ ଉତ୍କଳ ଆଶ୍ରମ ନିର୍ମାଣ ତାଙ୍କର ଅନ୍ୟଏକ କୃତିତ୍ୱ ।

ବଡ଼ଖେମୁଣ୍ଡିର ପ୍ରାଚୀନ ରାଜଧାନୀ ବିଜୟନଗରଗଡ଼ର ଜଗନ୍ନାଥ ମନ୍ଦିର ଓ ବହୁସ୍ତମ୍ଭ ବିଶିଷ୍ଟ ଗୁଣ୍ଡିଚା ମନ୍ଦିର, ଦିଗପହଣ୍ଡିର ଜଗନ୍ନାଥ ଓ ଦଧିବାମନ ମନ୍ଦିର, ପଞ୍ଚଦେଉଳ, ଡୁମୁଳାର ବାଙ୍କେଶ୍ୱରୀ ମନ୍ଦିର ପ୍ରଭୃତି ପ୍ରତ୍ନତାତ୍ତ୍ୱିକ ବିଭବରେ ବଡ଼ଖେମୁଣ୍ଡି ରାଜ୍ୟ ବିମଣ୍ଡିତ । ଅଧୁନା ବିଜୟନଗର ଗଡ଼ ଘୋଡ଼ାହାଡ଼ ଜଳ ଭଣ୍ଡାରରେ ଲୀନ । ଏହି ବିଜୟନଗରଗଡ଼ରେ କବିସୂର୍ଯ୍ୟ ବଳଦେବ ରଥ ଜନ୍ମଗ୍ରହଣ କରିଥିଲେ । ବେଳାନାଟ (ବାଉଁଶରାଣୀ), ଘୁଡୁକିନାଟ, ସଖୀନାଟ, ଓଷାକୋଠି ଚିତ୍ର, ଗଞ୍ଜପା ସାର ପାଇଁ ବଡ଼ଖେମୁଣ୍ଡି ପ୍ରସିଦ୍ଧ ।

**ଚିକିଟି :** ଚିକିଟି ଜମିଦାରୀ ଥିଲା ଗଞ୍ଜାମର ଅନ୍ୟତମ ସାଂସ୍କୃତିକ ପ୍ରାଣକେନ୍ଦ୍ର । ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଚିକିଟି ରାଜବଂଶର ଯଦୁମଣି ରାଉତରାୟ, କୁଳମଣି ରାଜେନ୍ଦ୍ର, କୃଷ୍ଣଚନ୍ଦ୍ର ରାଜେନ୍ଦ୍ର, ପୀତାମ୍ବର ରାଜେନ୍ଦ୍ର, ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ ଅବଦାନ ଅବିସ୍ମରଣୀୟ । ଚିକିଟି ଖଜୁରିଆ ଶାସନର ମହାମହୋପାଧ୍ୟାୟ ନରହରି ପଣ୍ଡା, 'ମେଘଦୂତ'ର ଯେଉଁ ଅଭିନବ 'ବ୍ରହ୍ମ ପ୍ରକାଶିକା' ଟୀକା ରଚନା କରିଛନ୍ତି ତାହା ତାଙ୍କ ଅଦ୍ଭୁତ ପାଣ୍ଡିତ୍ୟର ପରିଚାୟକ ଏବଂ ତାହା ଭାରତର ବିଦ୍ୱାନ୍ମଣ୍ଡଳୀରେ ଏକ ଦୁର୍ଲଭ ଗ୍ରନ୍ଥ ରୂପେ ପରିଚିତ ।

ଓଡ଼ିଆ ନାଟ୍ୟ ଜଗତକୁ ଚିକିଟି ରାଜପରିବାରର ଯେଉଁ ଅବଦାନ ରହିଛି ତହିଁ ମଧ୍ୟରେ ରାଧାପ୍ରେମଲୀଳାର ନାମ ଉଲ୍ଲେଖଯୋଗ୍ୟ । ବିଶ୍ୱମ୍ଭର ରାଜେନ୍ଦ୍ର 'ରାଧାପ୍ରେମଲୀଳା' ରଚନା କରିଥିଲେ । ଓଡ଼ିଶାରେ ରାମଚେତନାକୁ ଉଜ୍ଜୀବିତ

କରିବାରେ ଚିକିଟି ରାଜବଂଶର ଅବଦାନ କମ୍ ନୁହେଁ । ଅଷ୍ଟମ ଶତାବ୍ଦୀର ଶେଷାର୍ଦ୍ଧରେ କୃଷ୍ଣଚନ୍ଦ୍ର ରାଜେନ୍ଦ୍ର ପ୍ରଥମ କରି ରାମକାବ୍ୟ ରଚନା ପ୍ରତି ଆଗ୍ରହୀ ଥିଲେ । ସେ 'ରାମଲୀଳା' ନାମକ ଗ୍ରନ୍ଥ ପ୍ରଣୟନ କରି ଚିକିଟି ରାଜବଂଶରେ ରାମକାବ୍ୟ ରଚନାର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ଏହି ରାମଲୀଳା ଗ୍ରନ୍ଥଟି 'ଚିକିଟି ରାମଲୀଳା' ନାମରେ ପ୍ରଖ୍ୟାତ । ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରାଜା ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ ନାମରେ ଭଣିତା ହୋଇଥିବା 'ବୀର ରାମଚନ୍ଦ୍ର ବିଳାସ' ନାମକ ଏକ ଗ୍ରନ୍ଥ ମିଳେ । ବିଶ୍ୱମ୍ଭର ରାଜେନ୍ଦ୍ର ରାମକାବ୍ୟ ରଚନା ସହିତ କୃଷ୍ଣ ଚରିତ୍ରକୁ ନେଇ ଏକ କାଳ୍ପନିକ କାବ୍ୟ ମଧ୍ୟ ରଚନା କରିଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର କିଶୋର ଚନ୍ଦ୍ର ରାଜେନ୍ଦ୍ର ଊନବିଂଶ ଶତାବ୍ଦୀର ଶେଷ ଦୁଇ ଦଶକରେ ରଚନା କରିଥିଲେ ବହୁ କୃଷ୍ଣକାବ୍ୟ ଓ ଗୀତିକାବ୍ୟ । ତେବେ ରାମକାବ୍ୟ ଅପେକ୍ଷା ରାମଲୀଳା ସୃଷ୍ଟି ଓ ପୃଷ୍ଠପୋଷକତା କରିବାରେ ଚିକିଟି ରାଜବଂଶ ପ୍ରଖ୍ୟାତ । ଚିକିଟି ରାଜାମାନେ ନାଟକ ରଚନା ଓ ନାଟ୍ୟାଭିନୟର ମଧ୍ୟ ପୃଷ୍ଠପୋଷକ ଥିଲେ । ରାଜା ରାଧାମୋହନ ରାଜେନ୍ଦ୍ରଦେବ ଖ୍ରୀ.ଅ. ୧୯୧୦ ରୁ ୧୯୧୯ ମଧ୍ୟରେ ଛଅଗୋଟି ନାଟକ ରଚନା କରିଥିଲେ । ସେଗୁଡ଼ିକ ମଧ୍ୟରେ 'ପରିମଳା ସହଗମନ', 'ପ୍ରକୃତ ପ୍ରଣୟ' ପ୍ରଭୃତି ଉଲ୍ଲେଖନୀୟ ।

ଓଡ଼ିଶା ପ୍ରଦେଶ ଗଠନରେ ଚିକିଟି ରାଜା ଗୌରଚନ୍ଦ୍ର ଦେବଙ୍କ ଭୂମିକା ସ୍ମରଣୀୟ । ଚିକିଟୀର ମନ୍ଦିରଗୁଡ଼ିକ ମଧ୍ୟରେ ଜଗନ୍ନାଥ ମନ୍ଦିର, କୋଟଲିଙ୍ଗି ମନ୍ଦିର, ଚିକିଟି ନିକଟ ବରଙ୍ଗର ଶୈବ ମନ୍ଦିର, ଶ୍ରୀ ବରାହୀଙ୍କ ପୀଠ ପ୍ରଭୃତି ପ୍ରସିଦ୍ଧ । ଚିକିଟିର ରାଧାପ୍ରେମଲୀଳା, ରାମଲୀଳା, ରାସଲୀଳା ଓ ରାମନାଟକ, ଭୂତକେଳି ନୃତ୍ୟ, ସଖୀନାଟ ଓ ଗଞ୍ଜାପାସାର ପ୍ରଭୃତି ଓଡ଼ିଶାର ଲୋକକଳା ସଂସ୍କୃତିକୁ ସମୃଦ୍ଧ କରିଛି ।

ଏହିପରି ଓଡ଼ିଶାର ଇତିହାସ ଓ ସଂସ୍କୃତିକୁ ଗଞ୍ଜାମର ଜମିଦାରୀଗୁଡ଼ିକର ଅବଦାନ ଅତୁଳନୀୟ ।

**ଆତ୍ରେୟ**

ନେହରୁନଗର ମୁଖ୍ୟରାସ୍ତା

ବ୍ରହ୍ମପୁର-୭୬୦୦୦୩

# ବିନାୟକ ଆଚାର୍ଯ୍ୟ

# ଅବିସ୍ମରଣୀୟ ଶିକ୍ଷକ ଓ ସମାଜବାଦୀ ସଂଗଠକ

• ଡ଼କ୍ଟର କୈଳାସ ଚନ୍ଦ୍ର ଦାଶ

ଆଦର୍ଶ ଛାତ୍ର, ଆଦର୍ଶ ଶିକ୍ଷକ, ବିଖ୍ୟାତ ସଂଗଠକ, ବାମପନ୍ଥୀ କର୍ମୀ, ବିଧାୟକ ଏବଂ ସର୍ବୋପରି ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିନାୟକ ଆଚର୍ଯ୍ୟଙ୍କ ଜୀବନ କାହାଣୀ ଆଜି ମଧ୍ୟ ଅନାଲୋଚିତ । ଓଡ଼ିଶାର ସାମାଜିକ ଓ ରାଜନୈତିକ ଇତିହାସରେ ତାଙ୍କର ଏକ ବନ୍ଦନୀୟ ଆସନ ରହିଛି ଏହା ଅସ୍ୱୀକାର କରିହେବ ନାହିଁ । ତାଙ୍କର ସଂସଦୀୟ ଭାଷଣ ସମଗ୍ର ମଧ୍ୟରେ ଏକ ପ୍ରଗତିଶୀଳ, ବୈପ୍ଳବିକ ଅର୍ଥନୀତିଜ୍ଞ ତଥା ଶିକ୍ଷାବିତର ଛବି ପ୍ରତିବିମ୍ବିତ ହୋଇଥାଏ । ସେ କେଉଁ ପରିବେଶ ଓ ପରିସ୍ଥିତିରେ ଜୀବନ ଯାତ୍ରା କରିଥିଲେ ତାହା ସାଂପ୍ରତିକ ଛାତ୍ରଛାତ୍ରୀ ଏବଂ ଯୁବକ ଯୁବତୀମାନେ ଜାଣିବା ଆବଶ୍ୟକ । ଏହା ଦ୍ୱାରା ସେମାନେ ସମାଜକୁ ଅଗ୍ରଗତି ପଥରେ ଚାଳିତ କରିବାକୁ ପ୍ରଣୋଦିତ ହେବେ । ତାଙ୍କର କର୍ମଧାରା ଓ ଚିନ୍ତନର ସ୍ୱରୂପ ଜଣାପଡ଼ିଲେ ଏକ ଆଦର୍ଶବାଦୀ ଜୀବନର ସୂତ୍ରପାତ ହୋଇପାରିବ ଏବଂ ଓଡ଼ିଶାର ଅଗ୍ରଗତି ପାଇଁ ପ୍ରେରଣା ମିଳିପାରିବ ।

ବିନାୟକ ଆଚାର୍ଯ୍ୟ ବ୍ରହ୍ମପୁର ସହରର ଶଙ୍କରପୁର ସାହିରେ ଏକ ନିମ୍ନ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ଅଗଷ୍ଟ ମାସ ୩୦ ତାରିଖ ୧୯୧୮ ମସିହାରେ ଜନ୍ମଗ୍ରହଣ କରିଥିଲେ । ଡ଼କ୍ଟର ହରେକୃଷ୍ଣ ମହତାବ 'ପ୍ରଜାତନ୍ତ୍ର' ର ଡ଼ିସେମ୍ବର ୨୯,୧୯୭୬ ସଂଖ୍ୟାରେ 'ଗାଁ ମଜ୍‌ଲିସ୍' ସ୍ତମ୍ଭରେ ପ୍ରସଙ୍ଗ କ୍ରମେ ବିନାୟକ ବାବୁଙ୍କ ବଂଶର ଏକ କୌତୂହଳ ଜନକ ଘଟଣା ଲେଖିଥିଲେ । ତାଙ୍କ ବିବରଣୀ ଅନୁସାରେ – ଆଚାର୍ଯ୍ୟଙ୍କ ପୂର୍ବପୁରୁଷ ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ ପାଲକୋଣ୍ଡା ନାମକ ଏକ ରାଜ୍ୟର ରାଜାଙ୍କ ପ୍ରଧାନମନ୍ତ୍ରୀ ଥିଲେ । ସେ ରାଜା ବ୍ରିଟିଶ ସରକାରଙ୍କ କୋପଚକ୍ଷୁରେ ପଡ଼ି ରାଜ୍ୟ ହରାଇଲେ । ରାଜ୍ୟକୁ ଖାସ୍ କରି ଦେଇ ବ୍ରିଟିଶ୍ ସରକାର ପ୍ରଧାନମନ୍ତ୍ରୀଙ୍କୁ ପାଲକୋଣ୍ଡାରୁ ବହିଷ୍କାର କରି ବ୍ରହ୍ମପୁରରେ ବାର୍ଷିକ ଭତ୍ତାଦେଇ ରଖାଇଲେ ଏବଂ ପରିବାରର ପ୍ରତିପୋଷଣ ପାଇଁ ଯେତେ ଶଗଡ଼ ଧାନ ଦେବାର ବ୍ୟବସ୍ଥା କଲେ ସେତେବେଳେ ତାହାର ମୂଲ୍ୟ ଥିଲା ଏକ ହଜାର ଟଙ୍କା । ଏହି ବାର୍ଷିକ ବୃତ୍ତି ସେ ପରିବାର ମହତାବଙ୍କ ଆଲୋଚନା ପ୍ରକାଶ ପାଇବାବେଳେ ମଧ୍ୟ ଭୋଗ କରୁଥିଲେ । ଏହିପରି ଏକ ଆଦର୍ଶବାଦୀ ପରିବାରରେ ତାଙ୍କର ପିତା ରଘୁନାଥ ଆଚାର୍ଯ୍ୟ ଶିକ୍ଷକ ହିସାବରେ ଜୀବନ ନିର୍ବାହ କରିଥିଲେ । ବିନାୟକ ବାଲ୍ୟଶିକ୍ଷା ଠାରୁ ଆଇ.ଏ. ପରୀକ୍ଷା ପର୍ଯ୍ୟନ୍ତ ବ୍ରହ୍ମପୁରର ବିଦ୍ୟାଳୟ ଓ କଲେଜରେ ସମାପନ କରି ପାରଳାଖେମୁଣ୍ଡି କଲେଜରୁ ବି.ଏ. ପାସ୍ କରିଥିଲେ । ତାପରେ ସେ କଟକ ଟ୍ରେନିଂ କଲେଜ ରୁ ଡ଼ି.ଇଡ଼ି. ପାସ୍ କରିଥିଲେ । ଛାତ୍ର ଅବସ୍ଥାରୁ ବିନାୟକ ଦୁଃଖୀ ଦରିଦ୍ର

ମାନଙ୍କ ପ୍ରତି ସମ୍ବେଦନଶୀଳ ଥିଲେ । ଔପନିବେଶିକ ଶାସନକୁ ସେ ନାନା ଭାବରେ ଆକ୍ଷେପ କରିଥିଲେ । ୧୯୩୨–୩୩ ବେଳକୁ ବ୍ରହ୍ମପୁରରେ ଥିବା 'ଉତ୍କଳ ବଂଧୁ ସମାଜ' ସହିତ ସେ ସଂପର୍କ ରକ୍ଷା କରିଥିଲେ । ଶିକ୍ଷାପ୍ରସାର, ପୁସ୍ତକ ସଂଗ୍ରହ ଓ ଅଧ୍ୟୟନ ପରି କାର୍ଯ୍ୟକ୍ରମ ଏହି ସମାଜର ଅଙ୍ଗ ଥିଲା । ଛାତ୍ର ବିନାୟକ ଶିକ୍ଷାର ଅଭିବୃଦ୍ଧି ପାଇଁ ଏହି ସଂସ୍ଥାକୁ ଖଣ୍ଡିଏ ପୁସ୍ତକ ସାହାଯ୍ୟ କରିଥିଲେ । ସେ ମଧ୍ୟ 'ସେବକ ଦଳ' ନାମକ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଠନ କରି ଦୁଃଖୀ, ଦରିଦ୍ର, ଶୋଷିତ ଲୋକଙ୍କର ସେବା କାର୍ଯ୍ୟରେ ନିୟୋଜିତ ହୋଇଥିଲେ । କଲେଜ ଛାତ୍ରଥିବା ସମୟରେ ସେ ପାରଳାଧୀଶ୍ୱର କୃଷ୍ଣଚନ୍ଦ୍ର ଗଜପତିଙ୍କ ଆଦର୍ଶ କର୍ମଧାରା ଦ୍ୱାରା ଅନୁପ୍ରାଣିତ ହୋଇ ନବଉତ୍କଳ ଗଠନରେ ସହଯୋଗ କରିଥିଲେ ।

ବି.ଏ.ପାସ କରିବା ପରେ ମେଧାବୀ ଛାତ୍ର ବିନାୟକ ସ୍କୁଲ ଶିକ୍ଷକ ରୂପେ କର୍ମ ଜୀବନ ଆରମ୍ଭ କରିଥିଲେ । ସେ ଶିକ୍ଷକତାକୁ ଏକ ପବିତ୍ର ମାନବ ଧର୍ମ ରୂପେ ବିଶ୍ୱାସ କରୁଥିଲେ । ଶିକ୍ଷାକ୍ଷେତ୍ରକୁ ଏକ ମାନବଗଠନ ଅନୁଷ୍ଠାନ ରୂପେ ସମ୍ମାନ ଦେଉଥିଲେ । ସେ ଆଦର୍ଶପ୍ରିୟ, ଛାତ୍ରବତ୍ସଳ ଶିକ୍ଷକ ହିସାବରେ ଛାତ୍ରଛାତ୍ରୀମାନଙ୍କର ଚରିତ୍ର ଗଠନ ପ୍ରତି ସଜାଗ ଦୃଷ୍ଟି ଦେଉଥିଲେ । ସେମାନଙ୍କର ଶିକ୍ଷାଗତ କିମ୍ବା ଚରିତ୍ର ଗତ ତ୍ରୁଟି କିମ୍ବା ବିଶୃଙ୍ଖଳା ଦେଖିଲେ ସେ ସହ୍ୟ କରିପାରୁନଥିଲେ । ଛୁଟିଦିନ ମାନଙ୍କରେ ଅତିରିକ୍ତ କ୍ଲାସ୍ ରଖି ଛାତ୍ର ଛାତ୍ରୀମାନଙ୍କୁ ଶିକ୍ଷା ଦେଉଥିଲେ ଏବଂ ପରୀକ୍ଷା ପାଇଁ ଉପଯୁକ୍ତ ଘରୋଇ ପରୀକ୍ଷା କରୁଥିଲେ । ପ୍ରତିମାସର ଶେଷ ସପ୍ତାହରେ ସେ ଗୋଟିଏ ସାଂସ୍କୃତିକ ଆଲୋଚନା ସଭା କରି ନୀତିଶିକ୍ଷା ଦେଉଥିଲେ । ପାଶ୍ଚାତ୍ୟ ଆଦର୍ଶ ଓ ଜୀବନୀମାଳା ଶୁଣାଉଥିଲେ । ଭୂଗୋଳ ତାଙ୍କର ଶିକ୍ଷାଦାନର ମୁଖ୍ୟ ବିଷୟ ଥିଲା ଓ ଶ୍ରେଣୀରେ ସେ ପୃଥିବୀର ବିଭିନ୍ନ ଦେଶର ଭୌଗୋଳିକ ପରିସ୍ଥିତି ସହିତ ରାଜନୈତିକ ପରିବେଶର ବିଶଦ ବ୍ୟାଖ୍ୟା କରୁଥିଲେ ।

୧୯୪୦ ମସିହାରେ ବ୍ରହ୍ମପୁରରେ ଯେତେବେଳେ କଲାଜ୍ୱର ହୋଇଥିଲା ଏବଂ ତୋଫାନ୍ ଓ ଦୁର୍ଭିକ୍ଷର ପ୍ରାଦୁର୍ଭାବ ଦେଖାଦେଇଥିଲା ବିନାୟକଙ୍କ ତରୁଣ ସେବକ ସଂଘ ଅସହାୟ ଗରୀବ ରୋଗୀଙ୍କ ସେବା ଏବଂ ଘର ଘର ବୁଲି ବୁଭୁକ୍ଷୁମାନଙ୍କୁ ଚୁଡ଼ା ଚାଉଳ ବଣ୍ଟନ କରିଥିଲା । ଶିକ୍ଷକତା ସମୟରେ ଦେଶର ରାଜନୈତିକ ନେତାମାନଙ୍କ ସହ ତାଙ୍କର ସଂପର୍କ ଯୋଗୁଁ ଭାରତଛାଡ଼ ଆନ୍ଦୋଳନ ବେଳେ ତାଙ୍କୁ ପୋଲିସ ଅଟକ୍ବନ୍ଦୀଙ୍କ ଯୋଗସୂତ୍ର କାରୀ ବୋଲି ସନ୍ଦେହ କରିଥିଲା । ୧୯୪୫ ମସିହାରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଉଦ୍ଦେଶ୍ୟ ରେ ବ୍ରହ୍ମପୁରରେ ଅନୁଷ୍ଠିତ ବିରାଟ ସଭାରେ ବିନାୟକଙ୍କ ନିର୍ଦ୍ଦେଶ ରେ ତାଙ୍କର ତରୁଣ ସଂଘର କର୍ମୀମାନେ ସ୍ୱେଚ୍ଛାସେବକ ରୂପେ କାର୍ଯ୍ୟ କରିଥିଲେ । ବ୍ରହ୍ମପୁରରେ ଦଳିତମାନଙ୍କ ମଧ୍ୟରେ ବହୁ ଗଠନ ମୂଳକ କାର୍ଯ୍ୟ ଏହି ଶିକ୍ଷକତା ସମୟରେ ଆଚାର୍ଯ୍ୟ ସଂପାଦନ କରିଥିଲେ । ସେ ବ୍ରାହ୍ମଣ

ହୋଇ ମଧ୍ୟ ଦଳିତ ମାନଙ୍କ ସହ ଏକତ୍ର ଭୋଜନ କରି ତାଙ୍କ ପରିବାରର ତଥା ବ୍ରାହ୍ମଣ ସମାଜର ରୋଷର ପାତ୍ର ହୋଇଥିଲେ । ୧୯୫୪ ମସିହାରେ ବ୍ରହ୍ମପୁର ଓ ପାରଳାଖେମୁଣ୍ଡି ରେ କେତେକ ନ୍ୟସ୍ତସ୍ୱାର୍ଥ ମହଲ ଯେଉଁ ଭାଷାଗତ ଉତ୍ତେଜନା ଓ ଗଣ୍ଡଗୋଳ ସୃଷ୍ଟି କରିଥିଲେ ସେ ସମୟରେ ସେ ଶାନ୍ତିସେନାମାନ ଗଠନ କରି ଶାନ୍ତି, ସୌହାର୍ଦ୍ଦ୍ୟ ରକ୍ଷାପାଇଁ ଜନସାଧାରଣଙ୍କ ମଧ୍ୟରେ ଗଭୀର ଉଦ୍ୟମ ଚଳାଇଥିଲେ ।

ଶିକ୍ଷକତା କରୁଥିବା ସମୟରେ ବିନାୟକ ବାବୁ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ତାଙ୍କର ଗୁରୁଥିଲେ ବିଖ୍ୟାତ ସାମ୍ୟବାଦୀ ଦାର୍ଶନିକ ବିଜୟ ଚନ୍ଦ୍ର ଦାଶ । ତାଙ୍କ ପ୍ରେରଣାରେ ଆଚାର୍ଯ୍ୟ କେତେକ ବାମପନ୍ଥୀ ସାହିତ୍ୟ ଅଧ୍ୟୟନ କରିଥିଲେ । ଆନ୍ତର୍ଜାତିକ ରାଜନୀତିରେ ତାଙ୍କର ଗଭୀର ପ୍ରବେଶ ଥିଲା ।

ନବସ୍ୱାଧୀନ ଦେଶମାନଙ୍କର ପ୍ରଗତିଶୀଳ ନେତୃତ୍ୱ ପ୍ରତି ସେ ଅତ୍ୟନ୍ତ ସମ୍ବେଦନଶୀଳ ଥିଲେ । ଆଫ୍ରିକାର ବିପ୍ଳବୀ ନେତା ପାଟିସ୍ ଲୁମ୍ୱୁମ୍ବୁଙ୍କ ହତ୍ୟାରେ ଅତିମାତ୍ରାରେ ଭାବପ୍ରବଣ ହୋଇ ସେ ଦୁଇଦିନ ଉପବାସ ପାଳନ କରିଥିଲେ । ବହୁ ସମୟରେ ତାଙ୍କର ସହକର୍ମୀ ଗଣ ସଦାନନ୍ଦ ମହାନ୍ତି, ବ୍ରହ୍ମାନନ୍ଦ ପଣ୍ଡା, ମନମୋହନ ମିଶ୍ର, ଚିନ୍ତାମଣି ପାଣିଗ୍ରାହୀ, ବୈଷ୍ଣବ ଚରଣ ପଟ୍ଟନାୟକ, ବୈଦ୍ୟନାଥ ରଥ, ମୋହନ ଦାସ, ହରିହର ଦାସ, ଶଶିଭୂଷଣ ପତି ପ୍ରମୁଖ ଙ୍କ ସହ ସାମ୍ୟବଦୀ ତତ୍ତ୍ୱ ସଂପର୍କରେ ଆଲୋଚନା କରୁଥିଲେ । ସେହି ସମୟରେ ସେ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର 'ନୂଆ ଦୁନିଆ'ରେ ଅଗ୍ରଦେବ ଛଦ୍ମ ନାମରେ ଅନେକ ରାଜନୈତିକ ଲେଖା ପ୍ରକାଶ କରିଥିଲେ । (ପ୍ରଜାତନ୍ତ୍ର, ୧୮ ଡ଼ିସେମ୍ବର, ୧୯୮୩, କୈଳାସ ଆଚର୍ଯ୍ୟଙ୍କ ଆଲୋଚନା) ସାମ୍ୟବାଦରେ ବିଶ୍ୱାସ କରୁଥିବାରୁ ସେ ଶ୍ରମିକ ଆନ୍ଦୋଳନ ସହିତ ମଧ୍ୟ ଜଡ଼ିତ ଥିଲେ । ସେତେବେଳେ ବ୍ରହ୍ମପୁରରୁ 'ଆଜିର ଶ୍ରମିକ' ନାମରେ ଏକ ସାପ୍ତାହିକ ପତ୍ରିକା ନାଟ୍ୟଶ୍ରୀ ରଘୁନାଥ ମିଶ୍ରଙ୍କ ଦ୍ୱାରା ପ୍ରକାଶିତ ହେଉଥିଲା । ସାମ୍ୟବାଦ, କୃଷକ ଆନ୍ଦୋଳନ ତଥା ଅନ୍ୟାନ୍ୟ ବିଷୟରେ ଉପାଦେୟ ଲେଖାମାନ ଉକ୍ତ ପତ୍ରିକାରେ ଆଚାର୍ଯ୍ୟ ପ୍ରକାଶ କରୁଥିଲେ ।

ନବୋତ୍କଳ ତରୁଣ ସେବାସଂଘ କାର୍ଯ୍ୟକ୍ରମ ଠାରୁ ଆରମ୍ଭ କରି ବିଜୟ ଚନ୍ଦ୍ର ଦାସ ଏବଂ ନବକୃଷ୍ଣ ଚୌଧୁରୀଙ୍କ ପ୍ରେରଣା ଓ ଉପଦେଶରେ ବିନାୟକ ମାଷ୍ଟ୍ରେ ସମାଜବାଦୀ ଚିନ୍ତାଧାରାକୁ ଅଗ୍ରାଧିକାର ଦେଇଥିଲେ । ସେ ମହାତ୍ମାଗାନ୍ଧିଙ୍କ ଭିତରେ କାର୍ଲମାର୍କସଙ୍କୁ ଦେଖିଥିଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ଜଣେ ଗାନ୍ଧିବାଦୀ କର୍ମୀ ଓ ସଂଗଠକ ହିସାବରେ କାର୍ଯ୍ୟ କରିଥିଲେ । ଆଭାଦିଠାରେ ଭାରତୀୟ ଜାତୀୟ କଂଗ୍ରେସ ସମାଜବାଦୀ ଢ଼ାଞ୍ଚା କାର୍ଯ୍ୟକ୍ରମ ପ୍ରଥାକୁ ଗ୍ରହଣ କରିଥିବାରୁ ସେ କଂଗ୍ରେସ ସହିତ ଘନିଷ୍ଠ ସଂପର୍କ ରଖିଲେ । ସେ ମାର୍କସବାଦ୍ ଓ ଗାନ୍ଧିବାଦକୁ ଶିକ୍ଷକତା

ସମୟରେ ସଠିକ ଭାବରେ ଗ୍ରହଣ କରିଥିଲେ ଏବଂ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା କରି ନାନା ପ୍ରକାର ନିର୍ଯ୍ୟାତନାରେ ସଢୁଥିବା ଦଳିତ ବର୍ଗଙ୍କୁ ସାମାଜିକ ନ୍ୟାୟ ଦେବାରେ ସହାୟକ ହେବାପାଇଁ ସାହସର ସହିତ ଚେଷ୍ଟା କରିଥିଲେ । ଆଚାର୍ଯ୍ୟ ବିନୋବାଙ୍କର ଭୂଦାନ ଯଜ୍ଞ ସହିତ ସେ ସକ୍ରିୟ ଭାବେ ସଂଶ୍ଳିଷ୍ଟ ଥିଲେ ଏବଂ ସମଗ୍ର ଗଞ୍ଜାମ ଜିଲ୍ଲାରେ ଏହି ଯଜ୍ଞର ପ୍ରଚାର ଓ ପ୍ରସାର କରାଇଥିଲେ । ଏହି ସବୁ କାର୍ଯ୍ୟକଳାପର ମୂଳକେନ୍ଦ୍ର ଥିଲା ବ୍ରହ୍ମପୁର ମୁନିସପାଲ୍ ସ୍କୁଲ ଯେଉଁଠାରେ ତାଙ୍କର ଚିନ୍ତାଧାରା ସାକାର ରୂପ ନେଇ ବହିର୍ଜଗତକୁ ଆସିଥିଲା । ଜୀବନର ଶେଷ ପର୍ଯ୍ୟନ୍ତ ଭାରତ – ସୋଭିଏତ୍ ମୈତ୍ରୀସଂଘ, ଭାରତ – ଜର୍ମାନୀ ମୈତ୍ରୀ ସଂସଦ, ଭାରତୀୟ ଶାନ୍ତି ପରିଷଦ ଇତ୍ୟାଦିରେ ସେ ସହଯୋଗ କରିଥିଲେ । ୧୯୪୭ ମସିହାଠାରୁ ଆଚାର୍ଯ୍ୟ ତିରିଶ ବର୍ଷ ଧରି ରାଷ୍ଟ୍ରଭାଷା ପ୍ରଚାର ସମିତି ସହ ସଂପୃକ୍ତ ରହି ଓଡ଼ିଶାରେ ହିନ୍ଦୀ ଓ ଜାତୀୟ ସଂହତି ପ୍ରଚାରରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ୧୯୭୨ ରେ ସେ ଓଡ଼ିଶାରେ ରାଷ୍ଟ୍ରଭାଷା ପ୍ରଚାର ସମିତିର ସଭାପତି ଥିଲେ। ସେ ମଧ ଓଡ଼ିଶା ମାଧ୍ୟମିକ ଶିକ୍ଷକ ସଂଘର ସଂପାଦକ ଓ ପରେ ଉପସଭାପତି ହୋଇ ରାଜ୍ୟରେ ଶିକ୍ଷକ ମାନଙ୍କର ମଙ୍ଗଳ ପାଇଁ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ।

୧୯୫୦ ଦଶକରେ ଶିକ୍ଷକ ବିନାୟକ ଆଚାର୍ଯ୍ୟ ପ୍ରତ୍ୟକ୍ଷ ରାଜନୀତିରେ ଯୋଗଦେଇଥିଲେ । ୧୯୫୨ ମସିହାରେ ସାମ୍ୟବାଦ ଚିନ୍ତାଧାରାର ସାରଥୀ ଭାବରେ ଗଞ୍ଜାମର ନେତୃତ୍ୱ ନେଇଥିଲେ ବୁଗୁଡ଼ା ନିବାସୀ ବିଜୟ ଚନ୍ଦ୍ର ଦାସ । ସେଥିରେ ଶଶିଭୂଷଣ ପତି, ରାମକୃଷ୍ଣ ବେହେରା ଓ ବ୍ରହ୍ମାନନ୍ଦ ପଣ୍ଡାଙ୍କ ପରି ବିନାୟକ ଆଚାର୍ଯ୍ୟ ସହଯୋଗ କରିଥିଲେ । ୧୯୫୩ ଉପନିର୍ବାଚନରେ ବ୍ରହ୍ମପୁରରୁ ସାମ୍ୟବାଦୀ ଦଳର ପ୍ରାର୍ଥୀ ହୋଇ ବିନାୟକ ଆଚାର୍ଯ୍ୟ କଂଗ୍ରେସ ପ୍ରାର୍ଥୀ ବୃନ୍ଦାବନ ନାୟକଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । ଉପନିର୍ବାଚନରେ ପରାଜିତ ହେଲେ ସତ ବିନାୟକ ବାବୁ ଏହି ପ୍ରତିଦ୍ୱନ୍ଦ୍ୱିତାରେ ସମଗ୍ର ଗଂଜାମ ଜିଲ୍ଲାରେ ଅଭୂତପୂର୍ବ ଜନଜାଗରଣ ସୃଷ୍ଟି କରିଥିଲେ । ସାମ୍ୟବାଦୀ ଦଳ ପ୍ରତି ବିନାୟକ ବାବୁଙ୍କର ମମତା ଓ ଆନୁଗତ୍ୟ ଏତେ ବେଶୀ ଥିଲା ଯେ ସେ କେବଳ କମ୍ୟୁନିଷ୍ଟ ପାର୍ଟିର ସମର୍ଥକ ଦୋକାନୀ ଠାରୁ ପାନ, ଜଳଖିଆ ଖାଉଥିଲେ । ତାଙ୍କର ଧୋବା, ଭଣ୍ଡାରୀ, ଦରଜୀ ପ୍ରଭୃତିଙ୍କୁ ସେ ଦଳର ଶ୍ରେଣୀଭୁକ୍ତ କରିଥିଲେ । ତାଙ୍କର ବିରୋଧୀ ଦଳ କଂଗ୍ରେସ ପ୍ରାର୍ଥୀ ବୃନ୍ଦାବନ ନାୟକ ନିର୍ବାଚନରେ ଜୟଯୁକ୍ତ ହୋଇଥିଲେ ମଧ ଦୁହିଙ୍କ ମଧ୍ୟରେ ନିବିଡ଼ ବନ୍ଧୁତା ରହିଥିଲା । ପ୍ରାୟ ତିନିବର୍ଷର ବ୍ୟବଧାନ ପରେ ସେ ତାଙ୍କର ପ୍ରଧାନ ଶିକ୍ଷକ ପଦବୀକୁ ପୁନର୍ବାର ଫେରିଥିଲେ । ସେଥିପାଇଁ ବୃନ୍ଦାବନ ନାୟକ ତାଙ୍କୁ ପୂର୍ଣ୍ଣ ସହଯୋଗ କରିଥିଲେ । ଏହାପରେ ସେ କେତେକ କାରଣରୁ କମ୍ୟୁନିଷ୍ଟ ଦଳ ପରିତ୍ୟାଗ କରି ସର୍ବୋଦୟ ଆନ୍ଦୋଳନ ଓ ହିନ୍ଦୀ ପ୍ରଚାର କାର୍ଯ୍ୟରେ ଯୋଗଦେଇଥିଲେ ।

୧୯୬୭ ମସିହାରେ ବିନାୟକ ଆଚାର୍ଯ୍ୟ ପ୍ରଧାନ ଶିକ୍ଷକ ପଦରୁ ଇସ୍ତଫାଦେଇ ସକ୍ରିୟ ରାଜନୀତିରେ ପୁନଃ ଯୋଗଦାନ କଲେ । କଂଗ୍ରେସ ଦଳର ଆଦର୍ଶ ଓ କାର୍ଯ୍ୟକ୍ରମରେ ଅନୁପ୍ରାଣିତ ହୋଇ୧୯୫୮–୫୯ ରେ ସେ ଏହି ଦଳରେ ସାମିଲ ହୋଇଥିଲେ । (ଚୌଧୁରୀ ବିଷ୍ଣୁ ଚରଣ, 'ବିନାୟକ ଆଚାର୍ଯ୍ୟ, ଏକ ବହୁମୁଖୀ ବ୍ୟାକ୍ତିତ୍ୱ' ବିନାୟକ ଆଚାର୍ଯ୍ୟ ସ୍ମାରକୀ ବକ୍ତୃତା ମାଳା, ୨୦୦୫, ବିନାୟକ ଆଚାର୍ଯ୍ୟ କଲେଜ, ବ୍ରହ୍ମପୁର) ବିଜୁ ପଟ୍ଟନାୟକଙ୍କ ପରାମର୍ଶ କ୍ରମେ ସେ ବ୍ରହ୍ମପୁର ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଦଳର ପ୍ରାର୍ଥୀ ରୂପେ ୧୯୬୭ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କଲେ । ଏହି ନିର୍ବାଚନରେ ସେ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦ୍ୱୀ ଜନ କଂଗ୍ରେସ ପ୍ରାର୍ଥୀ ବସନ୍ତ କୁମାର ପାଣିଗ୍ରାହୀଙ୍କୁ ବହୁ ଭୋଟରେ ପରାଜିତ କରି ପ୍ରଥମ ଥର ପାଇଁ ରାଜ୍ୟ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ୧୯୬୭ ମସିହାରୁ ତାଙ୍କର ସଂସଦୀୟ ଜୀବନର ସୂତ୍ରପାତ ହୋଇଥିଲା । ପ୍ରଥମେ ସେ ବିଧାନ ସଭାର ମୁଖ୍ୟ ବିରୋଧୀ ଦଳ ଥିବା ୩୧ ଜଣିଆ କଂଗ୍ରେସ ବ୍ୟବସ୍ଥାପକ ଦଳର ଉପନେତା ହୋଇଥିଲେ । ଏହାର ଏକବର୍ଷ ପରେ ସେ ଉକ୍ତ ଦଳର ନେତା ନିର୍ବାଚିତ ହୋଇ ବିଧାନ ସଭାରେ ବିରୋଧୀ ଦଳର ନେତା ଦାୟିତ୍ୱ ଗ୍ରହଣ କରିଥିଲେ । ଏହି ସମୟ ଠାରୁ କଂଗ୍ରେସ ସଂଗଠନକୁ ବଞ୍ଚାଇ ରଖିବା ପାଇଁ ତାଙ୍କର ଉଦ୍ୟମ ଅବିସ୍ମରଣୀୟ ୧୯୭୧ ରେ ବ୍ରହ୍ମପୁର ନିର୍ବାଚନ ମଣ୍ଡଳୀରୁ ସେ କଂଗ୍ରେସ ପ୍ରାର୍ଥୀରକ୍ଷା ବିଜୟଲାଭ କରିଥିଲେ । ସେ ବିଧାୟକ ଭବନର ଏବଂ ୧୯୭୨ ରୁ ମନ୍ତ୍ରୀ ଭାବରେ ନିଜର ଦକ୍ଷତା ପ୍ରମାଣିତ କରିଥିଲେ । ଶେଷରେ ଘଟଣା କ୍ରମରେ ୨୬ ଡ଼ିସେମ୍ବର ୧୯୭୬ ରେ ବିନାୟକ ଆଚାର୍ଯ୍ୟ ଓଡ଼ିଶା ବିଧାନ ସଭା କଂଗ୍ରେସ ଦଳର ନୂଆ ନେତା ନିର୍ବାଚିତ ହେବାପରେ ରାଜ୍ୟରେ ଏକ ମନ୍ତ୍ରୀମଣ୍ଡଳ ଗଠନ ପାଇଁ ରାଜ୍ୟପାଳ ନିମନ୍ତ୍ରଣ କରିଥିଲେ । ମୁଖ୍ୟମନ୍ତ୍ରୀ ହେବାପରେ ବିନାୟକ ଆଚାର୍ଯ୍ୟ ରାଜ୍ୟରେ ନିର୍ମଳ, ସାଧୁ ଓ ଦୃଢ଼ ଶାସନ ପ୍ରତିଷ୍ଠା ଦିଗରେ ସର୍ବବିଧ ଉଦ୍ୟମ କରିବେ ବୋଲି ସଂକଳ୍ପ ଜଣାଇଥିଲେ ।

ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟ ୨୯ ତାରିଖ ଡ଼ିସେମ୍ବର ରାତିରେ ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ଏକ ବେତାର ଭାଷଣ ଦେଇଥିଲେ । ସେଥିରେ ସେବାକୁ ମୂଳମନ୍ତ୍ର କରି ଶାସନ ଦାୟିତ୍ୱ ତୁଲାଇବାକୁ ସେ ପରାମର୍ଶ ଦେଇଥିଲେ । ସେ କହିଥିଲେ – "ରାଜ୍ୟର ଉନ୍ନତିକଥା ଚିନ୍ତା କଲାବେଳେ ଯେଉଁମାନଙ୍କୁ ନେଇ ଓ ଯେଉଁମାନଙ୍କ ଜରିଆରେ ଏହି କାର୍ଯ୍ୟ ସଂପାଦନ ହେବ, ସେମାନଙ୍କ ସଂପର୍କରେ ମୁଁ ସଚେତନ । ଛାତ୍ର, ଯୁବକ, କୃଷକ, ଶ୍ରମିକ, ବୁଦ୍ଧିଜୀବୀ ତଥା ବିଭିନ୍ନ ଗୋଷ୍ଠୀର ଲୋକମାନଙ୍କୁ ମୁଁ ବିନମ୍ର ନିବେଦନ କରୁଛି ଯେ ଓଡ଼ିଶାର ଉନ୍ନତି ଓ ପ୍ରଗତି ପାଇଁ ଏବେ ଏକ ନୂଆ ସୁଯୋଗ ଆସିଛି । ଆସନ୍ତୁ ଆମେ ସମସ୍ତେ ମିଳିମିଶି ନିଷ୍ଠା ଓ ଆନ୍ତରିକତା ସହ ରାଜ୍ୟ ତଥା ଦେଶର କଲ୍ୟାଣ ପାଇଁ ଶପଥ ନେବା । ଏ ଦାୟିତ୍ୱ

ସଂପାଦନ ପାଇଁ ମୁଁ ସବୁ ଶ୍ରେଣୀର ଲୋକଙ୍କର ସାହାଯ୍ୟ ଓ ସହଯୋଗ କାମନା କରୁଛି । ଓଡ଼ିଶାକୁ ନୂଆ ରୂପ ଦେବାପାଇଁ ଆଜି ଆମକୁ ଯେଉଁ ସୁଯୋଗ ମିଳିଛି ତାହାର ସଦୁପଯୋଗ କରି ସୁଖୀ ଓ ସମୃଦ୍ଧ ଓଡ଼ିଶା ଗଢ଼ିବାକୁ ମୁଁ ରାଜ୍ୟବାସୀଙ୍କୁ ବିନମ୍ର ନିବେଦନ କରୁଛି ।'' ରାଜ୍ୟର ବହୁବିଧ ସମସ୍ୟାକୁ ଦୃଷ୍ଟିଦେବା ପାଇଁ ମୁଖ୍ୟମନ୍ତ୍ରୀ ହିସାବରେ ଆଚାର୍ଯ୍ୟ ନିବେଦନ କରିଥିଲେ । କିନ୍ତୁ ମାତ୍ର ଚାରିମାସ ତାଙ୍କର କାର୍ଯ୍ୟ କାଳ ଥିବାରୁ ତାଙ୍କର କଳ୍ପନା ବାସ୍ତବ ରୂପ ନେଇ ପାରିନଥିଲା । ୧୯୭୭ ମସିହା, ବିଧାନ ସଭା ନିର୍ବାଚନରେ ବିନାୟକ ବାବୁ ଉଭୟ ବ୍ରହ୍ମପୁର ଓ ଚିକିଟି ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଦଳର ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦ୍ୱିତା କରି ପରାଜିତ ହୋଇଥିଲେ । ପ୍ରକୃତ ପକ୍ଷେ ୧୯୬୯ ଠାରୁ ୧୯୭୭ ମଧ୍ୟରେ ଓଡ଼ିଶା ରାଜନୀତିରେ ଛକାପଂଝା ଲାଗି ରହିଥିଲା । ଏହି ଘୂର୍ଣ୍ଣିବାତ୍ୟାରେ ବିନାୟକ ଆଚାର୍ଯଙ୍କ ଭୂମିକା ଏକ ନିର୍ଭୀକ, ସଚ୍ଚୋଟ, ଆଦର୍ଶବାଦୀ ରାଜନୀତିଜ୍ଞର ସ୍ୱାକ୍ଷର ବହନ କରିଥିଲା । ମୁଖ୍ୟମନ୍ତ୍ରୀ ଥିବା କାଳରେ ତାଙ୍କର କାର୍ଯ୍ୟକ୍ରମ ଗଠନ ମୂଳକ ଥିଲା ଏବଂ ସେ ଜନ ସେବାକୁ ଗୁରୁତ୍ୱ ଦେଇଥିଲେ । ସେତେବେଳେ ସେ କଂଗ୍ରେସ ସଂଗଠନ ଉପରେ ଗୁରୁତ୍ୱ ଦେଇଥିଲେ । ଏହି କାଳରେ ତାଙ୍କର କେତୋଟି ସ୍ପଷ୍ଟ ମନ୍ତବ୍ୟ ଥିଲା ।

୧) ସ୍ଲୋଗାନ୍ ଦ୍ୱାରା ଜନସାଧରଣଙ୍କ ସମସ୍ୟା କଦାପି ସମାଧାନ ହୋଇପାରିବନାହିଁ । ବିଭିନ୍ନ ସମସ୍ୟାର ସମାଧାନ ସକାଶେ ଯୁବକ ଯୁବତୀମାନଙ୍କୁ କଠିନ ପରିଶ୍ରମ କରିବାକୁ ପଡ଼ିବ ।

୨) କଥା କମ୍ କାମ ବେଶି ଆଦର୍ଶରେ ଯୁବସମାଜ ଅନୁପ୍ରାଣିତ ହେବା ଆବଶ୍ୟକ ।

୩) ଛୋଟ ପରିବାର ଗଠନର ବାର୍ତ୍ତା ଓ ନିଜର ସନ୍ତାନମାନଙ୍କର ଉପଯୁକ୍ତ ପ୍ରତିପାଳନର ବାର୍ତ୍ତା ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ଆବଶ୍ୟକ ।

୪) ଦ୍ରୁତଗତିରେ ବୃଦ୍ଧି ପାଉଥିବା ଆମର ଜନସଂଖ୍ୟାକୁ ଯଦି ନିର୍ଦ୍ଧିଷ୍ଟ ସମୟ ଭିତରେ ନିୟନ୍ତ୍ରଣ କରାନଯାଏ, ତେବେ ଏ ଦେଶର ଆର୍ଥିକ ଅବସ୍ଥା, ଏହାର ସାମାଜିକ ଜୀବନ ଓ ଆମର ପାରିବାରିକ ପରିବେଶ ଭିତରେ ଏକ ଭୟାବହ ପରିସ୍ଥିତି ସୃଷ୍ଟିହେବ । ପରିବାର ନିୟୋଜନ ଯୋଜନା ହେଉଛି ସମସ୍ତ ଉନ୍ନତି ମୂଳକ କାର୍ଯ୍ୟକ୍ରମର ମୂଳପିଣ୍ଡ । ଏ ଯୋଜନାର ସଫଳତା ଉପରେ ଆମର ଜାତୀୟ ଆୟର ଅଭିବୃଦ୍ଧି ଓ ବ୍ୟକ୍ତି ବିଶେଷ ଜୀବନ ଧାରଣ ମାନର ଉନ୍ନତି ପ୍ରତ୍ୟକ୍ଷ ଭାବରେ ନିର୍ଭର କରେ ।

ମୁଖ୍ୟମନ୍ତ୍ରୀ ଆଚାର୍ଯ୍ୟ ଶିକ୍ଷାକ୍ଷେତ୍ରରେ ନୂତନ ଦିଗନ୍ତ ଉନ୍ମୋଚନ, ନିରକ୍ଷରତା ଦୂରୀକରଣ, ସୁଲଭ ମୂଲ୍ୟରେ ଛାତ୍ରଛାତ୍ରୀମାନଙ୍କୁ ଲିଖନପଠନ ସାମଗ୍ରୀ ଓ ପାଠ୍ୟ ପୁସ୍ତକ ଯୋଗାଣ, ପାଠ୍ୟପୁସ୍ତକ ବ୍ୟାଙ୍କ ପ୍ରତିଷ୍ଠା, ଶୋଷଣ ମୁକ୍ତ ସମାଜ ଗଠନ,

ଗ୍ରାମାଞ୍ଚଳରେ ମହାଜନୀ କାରବାର ବିଲୋପ ଉପରେ ଗୁରୁତ୍ୱ ଦେଇଥିଲେ । ତାଙ୍କର ବହୁମୁଖୀ କର୍ମଧାରା ତାଙ୍କ ବିଧାନ ସଭା ଭାଷଣ ଓ ବିଧାନସଭା ବାହାରେ ପ୍ରଦତ୍ତ ଭାଷଣ ରୁ ସୂଚିତ ହୋଇଥାଏ । ଶିକ୍ଷା, ସମାଜ କଲ୍ୟାଣ, ସାଂସ୍କୃତିକ ସଂଗଠନ, ଅର୍ଥନୈତିକ ଅଭିବୃଦ୍ଧି ଓ ଯୋଜନା, ଦଳିତ ସମସ୍ୟାର ସମାଧାନ, କୃଷି ଓ ଶିଳ୍ପର ବିକାଶ ପରି ନାନା କର୍ମ ଧାରାରେ ସେ ଅବଗାହନ କରିଥିଲେ । ବିରୋଧୀ କଂଗ୍ରେସ ଦଳର ନେତା ହିସାବରେ ୧୯୬୯ ରେ ହୋଇଥିବା ଛାତ୍ର ଆନ୍ଦୋଳନକୁ ଆଚାର୍ଯ୍ୟ ପୂର୍ଣ୍ଣ ସମର୍ଥନ କରିଥିଲେ । ଛାତ୍ରଛାତ୍ରୀମାନଙ୍କୁ ବାମପନ୍ଥୀ ଦଳମାନେ ଉସୁକାଉଛନ୍ତି ବୋଲି ମୁଖ୍ୟମନ୍ତ୍ରୀ ଯେଉଁ ବିବୃତି ଦେଇଥିଲେ ୧୯୬୯ ରେ ତାହାକୁ ନିର୍ଦ୍ଦେଶ କରି ସେ ପ୍ରକାଶ କରିଥିଲେ ଯେ ଏଭଳି ଉକ୍ତି ଛାତ୍ରଛାତ୍ରୀ ମହଲରେ ବିଭେଦ ସୃଷ୍ଟି କରି ଆନ୍ଦୋଳନ କୁ ଭଣ୍ଡୁର କରିବପାଇଁ ଉଦ୍ଦିଷ୍ଟ । ସେଥିପାଇଁ ଛାତ୍ରସମାଜ କୁ ସତର୍କ ରହିବାକୁ ସେ ପରାମର୍ଶ ଦେଇଥିଲେ । ୧୯୬୯ ଅଗଷ୍ଟ ୩୧ ରେ ସର୍ବଦଳୀୟ ସାଧାରଣ ସଭାରେ ଛାତ୍ରଛାତ୍ରୀ ମାନଙ୍କର ଯଥାର୍ଥ ଦାବି ଗୁଡ଼ିକୁ ସରକାର ଅବିଳମ୍ବେ ଗ୍ରହଣ କରି ରାଜ୍ୟରେ ଶାନ୍ତି ଶୃଙ୍ଖଳା ଫେରାଇ ଆଣିବାକୁ ସେ ମୁଖ୍ୟମନ୍ତ୍ରୀଙ୍କୁ ନିବେଦନ କରିଥିଲେ । ଅଙ୍କୁଶପୁର ଗ୍ରାମରେ ୧୯୭୩ ରେ ଅନୁଷ୍ଠିତ ହୋଇଥିବା ବ୍ରହ୍ମପୁର ଶିକ୍ଷାଜିଲ୍ଲା ପ୍ରାଥମିକ ଶିକ୍ଷକ ସମ୍ମିଳନୀ ରେ ଆଚାର୍ଯ୍ୟ ଶିକ୍ଷା ବ୍ୟବସ୍ଥା ଉପରେ ସୁଚିନ୍ତିତ ମତ ଉପସ୍ଥାପନ କରିଥିଲେ । ଏକ ସ୍ୱାଧୀନ ସରକାର ପ୍ରାଥମିକ ଶିକ୍ଷାର ବିକାଶ କରିପାରି ନଥିବାରୁ ସେ ଦୁଃଖ ପ୍ରକାଶ କରିଥିଲେ ଏବଂ ସମଗ୍ର ପ୍ରାଥମିକ ଶିକ୍ଷା ବ୍ୟବସ୍ଥାର ବୈପ୍ଳବିକ ପିରବର୍ତ୍ତନ ପାଇଁ ଦାବି କରିଥିଲେ । ପାଠ୍ୟକ୍ରମରେ କେବଳ ପରିବର୍ତ୍ତନ କରାଗଲେ କୈଣସି ଭଲଫଳ ହେବନାହିଁ ବୋଲି ସେ ସୂଚନା ଦେଇଥିଲେ । ଶିକ୍ଷାର ଉନ୍ନତି ପାଇଁ ସେ ପରିଦର୍ଶନକାରୀ ଅଫିସର ମାନଙ୍କୁ ଫଳପ୍ରଦ ଭୂମିକା ଗ୍ରହଣ କରିବାକୁ ନିବେଦନ କରିଥିଲେ । ଓଡିଶାର କୃଷିମନ୍ତ୍ରୀ ହିସାବରେ ୧୯୭୩ ମସିହରେ କୃଷିସମସ୍ୟା ଉପରେ ଗୁରୁତ୍ୱ ଦେଇ ଆଚାର୍ଯ୍ୟ କାର୍ଯ୍ୟ କରିଥିଲେ । ତାଙ୍କ ମତରେ ଓଡିଶାର ଶତକଡା ୮୦ ଭାଗ ଲୋକଙ୍କର ଉନ୍ନତି ନ ହେଲେ ଓଡ଼ିଶାର ଉନ୍ନତି ଅସମ୍ଭବ । କେବଳ ରାଉରକେଲା ପରି କେତୋଟି କଳକାରଖାନା ଗଢିଦେଲେ ଓଡିଶାର ଖାଦ୍ୟ ସମସ୍ୟାର ସମାଧାନ ହୋଇଯିବ ନାହିଁ । ଓଡିଶାର ୮୨ ଭାଗ ଜମିରେ ଜଳସେଚନର ବ୍ୟବସ୍ଥା ନାହିଁ । ଏ ଦିଗରେ ଯେତେଦୂର ଧ୍ୟାନ ଦିଆଯିବାର କଥା ତାହା ଦିଆଯାଇ ନାହିଁ ବୋଲି ସେ ୧୯୭୩ ରେ ପ୍ରକାଶ କରିଥିଲେ । ଏହି କାଳରେ ସେ ଶ୍ରମିକ ସମସ୍ୟାକୁ ମଧ୍ୟ ଗୁରୁତ୍ୱ ଦେଇଥିଲେ । ଏପ୍ରିଲ ୧,୧୯୭୩ ରେ ଧାନ ମଣ୍ଡଳ ରେଲଷ୍ଟେସନ ସମ୍ମୁଖ ପଡିଆରେ ସ୍ଥାନୀୟ ଶ୍ରମିକ କଂଗ୍ରେସ ପକ୍ଷରୁ ଏକ ସାଧାରଣ ସଭାରେ କୃଷିମନ୍ତ୍ରୀ ଆଚାର୍ଯ୍ୟ ଶ୍ରମିକ ମାନଙ୍କୁ ଉଦ୍‌ବୋଧନ

ଦେଇଥିଲେ । ତାଙ୍କ ମତରେ ସମାଜରେ ଯେଉଁମାନେ ଅର୍ଥନୈତିକ ଦୃଷ୍ଟିରୁ ନିମ୍ନରେ ଅଛନ୍ତି ସେମାନଙ୍କ ଅବସ୍ଥାରଉନ୍ନତି ଘଟାଇବା ସମାଜବାଦ ଓ କଂଗ୍ରେସର ଲକ୍ଷ୍ୟ । ସମାଜବାଦୀ କାର୍ଯ୍ୟକ୍ରମକୁ ଆଗେଇନେବାକୁ ସମସ୍ତେ ଅଣ୍ଟାଭିଡି ବାହାରି ଆସିବାକୁ ସେ ଆହ୍ୱାନ ଦେଇଥିଲେ । କଂଗ୍ରେସର ଏହା ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ । ବିନା ଆନ୍ଦୋଳନ ରେ ଲକ୍ଷ୍ୟ ହାସଲ କରିବା ଅସମ୍ଭବ । ସେ କହିଲେ ଯେତେଯେତେ କର୍‌ପୋରେସନ୍ ହୋଇଛି ତାହା ଶ୍ରମିକମାନଙ୍କ ଉନ୍ନତିପାଇଁ । ଯଦି ତାହା ଫଳପ୍ରଦ ନହୋଇ ଶ୍ରମିକମାନଙ୍କୁ ଅଶାନ୍ତି ଅସନ୍ତୋଷରେ ରଖୁଥାଏ ତେବେ ତାର ପରିଣତି ଭୟାବହ ହେବ । ଏହିପରି ଉଦ୍‌ବୋଧନରୁ ଏକଥା ସ୍ପଷ୍ଟ ଯେ ବିନାୟକ ଆଚାର୍ଯ୍ୟ କ୍ଷମତାରେ ଥାଇ ମଧ୍ୟ ତାଙ୍କର ମୂଳ ଅଙ୍ଗୀକାର ବଦ୍ଧତାକୁ ପରିତ୍ୟାଗ କରିନଥିଲେ । ଶିକ୍ଷା, କୃଷି ଓ ଶ୍ରମିକର ଉନ୍ନତିରେ ଦେଶର ଉନ୍ନତି – ଏକଥା ତାଙ୍କର ମୂଳମନ୍ତ୍ର ଥିଲା । ମୁଖ୍ୟମନ୍ତ୍ରୀ ହିସାବରେ ଆଚାର୍ଯ୍ୟ ଶ୍ରମିକ ସ୍ୱାର୍ଥକୁ ଗୁରୁତ୍ୱ ଦେଇଥିଲେ । ଜରୁରୀକାଳୀନ ଅବସ୍ଥାର ସୁଯୋଗ ନେଇ ଯେଉଁମାଲିକମାନେ ଶ୍ରମିକମାନଙ୍କର ସ୍ୱାର୍ଥରେ କ୍ଷତି ଘଟାଇବାକୁ ଉଦ୍ୟମ କରିବେ ସେମାନଙ୍କ ବିରୁଦ୍ଧରେ କଠୋର ନୀତି ଗ୍ରହଣ କରାଯିବ ବୋଲି ଜଟଣୀ ଠାରେ ଦକ୍ଷିଣପୂର୍ବ ରେଲବାଇ ମେନ୍‌ସ୍ କଂଗ୍ରେସ, ଖୋର୍ଦ୍ଧାରୋଡ଼ ଶାଖା ପକ୍ଷରୁ ଆୟୋଜିତ ଜାନୁୟାରୀ ୬, ୧୯୭୭ ର ଏକ ସମ୍ବର୍ଦ୍ଧନା ସଭାରେ ମୁଖ୍ୟମନ୍ତ୍ରୀ ଆଚାର୍ଯ୍ୟ ସତର୍କବାଣୀ ଶୁଣାଇଥିଲେ । ଶ୍ରମିକ ମାନଙ୍କର ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରିବାକୁ ମାଲିକମାନେ ବାଧ୍ୟ ଅଟନ୍ତି ବୋଲି ସେ ସେଦିନ ଦୃଢ଼ ଭାବରେ ମତ ପ୍ରକାଶ କରିଥିଲେ । (ପ୍ରଜାତନ୍ତ୍ର, ୧୦ ଜାନୁୟାରୀ, ୧୯୭୭) ଶାସକ ନୁହେଁ ସେବକର ମନୋଭାବ ନେଇ ଓଡ଼ିଶାର ଅବହେଳିତ ଜନତାର ଆଖିରୁ ଲୁହ ପୋଛି ପାରିଲେ ରାଜ୍ୟ ଶାସନର ଯେଉଁ ପରିବର୍ତ୍ତନ ୧୯୭୬ ଡ଼ିସେମ୍ବର ଶେଷରେ ଘଟିଲା ତାହା ସାର୍ଥକ ହେବ ଏବଂ କଂଗ୍ରେସ ତଥା ଯୁବକଂଗ୍ରେସ ଉପରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିପାରିବେ ବୋଲି ୧୦ ଜାନୁୟାରୀ ୧୯୭୭ ରେ କଟକର ଶହୀଦ ଭବନଠାରେ ଯୁବ ଜାଗୃତି ଦିବସ ଉପଲକ୍ଷେ ଆୟୋଜିତ ସଭାରେ ସେ ମତ ପ୍ରକାଶ କରିଥିଲେ । ରାଜ୍ୟର ଦରିଦ୍ର ଜନତାର ସେବା କରିବା ଦିଗରେ କଂଗ୍ରେସ କର୍ମୀମାନେ ନିଃସ୍ୱାର୍ଥପର ଭାବରେ ନିଜକୁ ନିୟୋଜିତ କରିବାକୁ ସେ କହିଥିଲେ । ତାଙ୍କ ମତରେ ରାଜ୍ୟର ଉନ୍ନୟନ କାର୍ଯ୍ୟର ସଫଳତା ଦିଗରେ ଅମଲାତନ୍ତ୍ର ଉତ୍ସର୍ଗୀକୃତ ମନୋଭାବ ନେଇ କାର୍ଯ୍ୟ କରିବା ଦରକାର ।

ବିନାୟକ ଆଚାର୍ଯ୍ୟ ବିଶିଷ୍ଟ ବିଧାୟକ ଥିଲେ । ତାଙ୍କର ଚିନ୍ତନ ଓ ବହୁମୁଖୀ କାର୍ଯ୍ୟକ୍ରମ ତାଙ୍କର ବିଧାନସଭା ଭାଷଣମାନଙ୍କରେ ପ୍ରତିଫଳିତ ହୋଇଥିଲା । ସେଥିପାଇଁ ୧୯୬୭ ଠାରୁ ୧୯୭୭ ମଧ୍ୟରେ ଓଡ଼ିଶା ବିଧାନ ସଭାର ବିଭିନ୍ନ

ଅଧିବେଶନରେ ତାଙ୍କ ଭାଷଣ ସମଗ୍ରର ସମୀକ୍ଷା ଆବଶ୍ୟକ । ଶିକ୍ଷା, ସ୍ୱାସ୍ଥ୍ୟ, ବିକ୍ରୀକର, ଆଇନ, ଶିଳ୍ପ, ଖାଦ୍ୟ ଓ ସାଧାରଣ ଯୋଗାଣ, ଜଳସେଚନ, ରାଜସ୍ୱ, ନିଶା ନିବାରଣ , ରେଳପଥ ପରି ଅନେକ ବିଷୟରେ ତାଙ୍କର ସ୍ପଷ୍ଟ ଭାଷଣ ତାଙ୍କ ମୌଳିକ ଦୃଷ୍ଟି କୋଣ ଓ ଗଠନାତ୍ମକ କାର୍ଯ୍ୟକ୍ରମର ପ୍ରତିବିମ୍ବ ବହନ କରନ୍ତି । ୧୯୬୭ ମସିହାଠାରୁ ୧୯୭୨ ମସିହା ମଧ୍ୟରେ ଶିକ୍ଷା ସଂପର୍କରେ ଓଡ଼ିଶାର ବିଧାନ ସଭାରେ ତାଙ୍କର ବକ୍ତୃତା ମାଳା ଶିକ୍ଷା ସଂସ୍କାର କ୍ଷେତ୍ରରେ ସଫଳ ଭୂମିକା ଗ୍ରହଣ କରିଥିଲା । ୧୯୬୭ ଜୁନ୍ ୨୩ ରେ ବିଧାନ ସଭାରେ ଭାଷଣରେ ଶିକ୍ଷା କ୍ଷେତ୍ରରେ ଓଡ଼ିଶାର ଅଗ୍ରଗତି ହେଉନଥିବାର କଥା ପ୍ରକାଶ କରିଥିଲେ । ଆସାମ ପରି ପାହାଡ଼ିଆ ଓ ଆଦିବାସୀବହୁଳ ରାଜ୍ୟ ଶିକ୍ଷା କ୍ଷେତ୍ରରେ ଓଡ଼ିଶାଠାରୁ ବହୁତ ଆଗରେ ଥିବା କଥା ପ୍ରକାଶ କରି ସେ ଆଶ୍ଚର୍ଯ୍ୟ ହୋଇଥିଲେ । ସେ କହିଥିଲେ – ଆମେ କଲେଜ ଶିକ୍ଷାପ୍ରତି ଯଦି ଜୋର୍ ନଦେବା ତାହେଲେ ମେଧାବୀ ଛାତ୍ରଛାତ୍ରୀ ଆମେ ପାଇ ପାରିବା ନାହିଁ । ଆମର ଶିକ୍ଷାର ଅଗ୍ରଗତି ଉପରେ ଦେଶର ଅଗ୍ରଗତି ନିର୍ଭର କରୁଅଛି । ମୁଁ ତ ଭାବୁଛି ଆମେ ଅତୀତରେ ଯେଉଁ ସବୁ ଯୋଜନା କରିଛୁ ସେଥିରେ ଶିକ୍ଷାକୁ ପ୍ରଥମ ସ୍ଥାନ ନ ଦେଇ ତ୍ରୁଟି କରିଛୁ । ଯେଉଁ ଦେଶରେ ଶିକ୍ଷାକୁ ଅଗ୍ରାଧିକାର ଦିଆଯାଇଛି ଯେ ଦେଶରେ ଯୋଜନା ସଫଳ ହୋଇଛି । ଶିକ୍ଷା ବିନା ଦେଶର ଉନ୍ନତି ସମ୍ଭବ ନୁହେଁ । ଯେଉଁ ଦେଶମାନ ଯୋଜନାବଦ୍ଧ ଅର୍ଥନୀତି ଦ୍ୱାରା ଉନ୍ନତି ହୋଇଛନ୍ତି ସେମାନେ ଶିକ୍ଷାକୁ ଯୋଜନା ରେ ପ୍ରଥମ ସ୍ଥାନ ଦେଇଛନ୍ତି । ବିଶେଷତଃ ପ୍ରାଥମିକ ଶିକ୍ଷା ପାଇଁ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି । ଭାଷଣରେ ଓଡ଼ିଶାରେ ନାରୀଶିକ୍ଷାର ଅଗ୍ରଗତି ହେଉନଥିବା, ପ୍ରାଥମିକ ଶିକ୍ଷା ବର୍ଦ୍ଧିତ ଜନ୍ମହାର ଦୃଷ୍ଟିରୁ ନିରୁତ୍ସାହଜନକ ଅଗ୍ରଗତି କରୁଥିବାର ସେ ସୂଚାଇଥିଲେ ।

ବିଧାନସଭାର ବିଭିନ୍ନ ଅଧିବେଶନରେ ୧୯୬୭ ରୁ ୧୯୭୨ ମଧ୍ୟରେ ସେ ପ୍ରାଥମିକ ଶିକ୍ଷାପଦ୍ଧତି, ମାଧ୍ୟମିକ ଶିକ୍ଷା ପଦ୍ଧତି, ମାଧ୍ୟମିକ ଶିକ୍ଷାବୋର୍ଡ଼, ଡ଼ିପିଆଇ ଅଫିସ୍, ସୈନିକ ସ୍କୁଲ ପରି ପ୍ରସଙ୍ଗ ଉପରେ ବାରଂବାର ଆଲୋଚନା କରି ମୂଲ୍ୟବାନ ପରାମର୍ଶ ଦେଇଥିଲେ । ୧୯୬୮ ରେ ଓଡ଼ିଶା ଶିକ୍ଷା ବିଧେୟକ ଉପରେ ସେ ସୁଚିନ୍ତିତ ମତ ଦେଇଥିଲେ । ୧୯୭୦ ମାର୍ଚ୍ଚ ୧୩ ତାରିଖରେ ଓଡ଼ିଶା ବିଧାନ ସଭାରେ ଶିକ୍ଷାଦାବି ସଂକ୍ରାନ୍ତରେ ଆଲୋଚନା କରି ଏକ ଦୀର୍ଘ ଭାଷଣ ଦେଇଥିଲେ । ଏହି ପ୍ରସଙ୍ଗରେ ସେ କହିଥିଲେ – ଯେ କୌଣସି ଗୋଟିଏ ନୀତି ଉପରେ ନହେଲେ ଆମର ଯେପରି ସ୍କୁଲ ସଂଖ୍ୟା ଓ କଲେଜ ସଂଖ୍ୟା ବଢୁଛି ତାର କିଛି ଅର୍ଥ ରହିବ ନାହିଁ । ଶିକ୍ଷାସହିତ ଆମ ଦେଶର ଉନ୍ନତି ଓ ଆମ ଦେଶର ଜନସାଧାରଣଙ୍କର ଘନିଷ୍ଠ ଭାବରେ ସଂପର୍କ ରହିଛି, ତାକୁ ବିଚାର କୁ ନନେଇ କେବଳ ଗତାନୁଗତିକ ଭାବରେ କେତେକ ସ୍କୁଲ ବା କଲେଜ ସ୍ଥାପନ କରି ଦେଲେ

କିଛି ହୋଇପାରିବ ନାହିଁ । ହଜାରେ ପ୍ରାଥମିକ ଶିକ୍ଷକ ନିଯୁକ୍ତି କରିଦେଲେ, ୫/୭ ଟା ହାଇସ୍କୁଲ ବଢ଼ାଇଦେଲେ କି କିଛି କଲେଜ କରିଦେଲେ ବା କଲେଜରେ କେତେକ ବିଷୟ ଖୋଲିଦେଲେ ଯେ ଆମର ସବୁ ହୋଇଗଲା ଏହାର କିଛି ଅର୍ଥ ନାହିଁ । କେଉଁ ଉଦ୍ଦେଶ୍ୟରେ ଏସବୁ କରାଯାଉଛି ସେ ସବୁ ବିଷୟରେ ନୀତି ସ୍ଥିର ହେବା ଉଚିତ । ଏ ଜାତିର ଆଶା ଆକାଂକ୍ଷା ପୂରଣ କରିବା ପାଇଁ ଶିକ୍ଷା ବିଭାଗ କେବଳ ଗୋଟିଏ ବିଭାଗ ଯାହାଦ୍ୱାରା କି ଏହା ଉପଯୁକ୍ତ ଭାବରେ ହୋଇପାରିବ । ଭାରତବର୍ଷର ଭାଗ୍ୟ ତାର ଶ୍ରେଣୀ କକ୍ଷ ମାନଙ୍କରେ ରୂପାୟିତ ହୋଇଛି । ଏପରି ଅବସ୍ଥାରେ ଆମର ଏ ବିଷୟରେ ଯଦି ଗୋଟିଏ ସ୍ପଷ୍ଟ ବିଚାର ନରହିବ ଓ ଆମର ଶିକ୍ଷାର ଲକ୍ଷ୍ୟ କଣ ନରହିବ, ତାହେଲେ ଆମେ ଆଉ କରିବା କଣ ? ଏ ସଂପର୍କରେ ବହୁ କମିଶନ ରିପୋର୍ଟ ଲେଖିଛନ୍ତି । ସର୍ଜଣ୍ଟ କମିଶନ୍, ମୁଦାଲିୟର କମିଶନ୍ ଓ କୋଠାରୀ କମିଶନ୍ । ସେ ରିପୋର୍ଟରୁ ଅନ୍ତତଃ ଆମର ସାରାଂଶ ଗ୍ରହଣ କରିବା କଥା । ଆଜି ପର୍ଯ୍ୟନ୍ତ ପୁରାତନ ପଦ୍ଧତି ଅନୁସାରେ ଶିକ୍ଷାପଦ୍ଧତି ଚାଲୁ କରାଯାଇଛି । ସେସବୁର କୌଣସି ପ୍ରକାର ପରିବର୍ତ୍ତନ କରାଯାଇ ନାହିଁ । ଯାହା କିଛି ସାମାନ୍ୟ ପରିବର୍ତ୍ତନ ହୋଇଛି ତାହା ଶିକ୍ଷା ପଦ୍ଧତିର ପରିବର୍ତ୍ତନ ପାଇଁ ଯଥେଷ୍ଟ ନୁହେଁ । ଇଂରେଜୀ ଶିକ୍ଷା ବା ଆମର ଯେଉଁ କଲେଜ ସିଷ୍ଟମ ଅଫ୍ ଏଜୁକେସନ୍ ଅଛି ସ୍ୱାଧୀନ ଭାରତରେ ତାର ଆଭିମୁଖ୍ୟ ବଦଳିବା ଦରକାର । ଆମ ଦେଶରେ ଉତ୍ତମ ଶିକ୍ଷା ବୋଲି କାହାକୁ କୁହାଯାଏ ? ଧନ୍ଦାଜ୍ଞାନ ମାଧ୍ୟମରେ ଶିକ୍ଷାଦେବା ହେଉଛି ଉତ୍ତମ ଶିକ୍ଷା । କିନ୍ତୁ ସେ ଦିଗରେ କିଛି ବ୍ୟବସ୍ଥା କରାଯାଇନାହିଁ । ଭାଷା ଶିକ୍ଷା, ସାହିତ୍ୟ ଶିକ୍ଷା, ସାମାଜିକ ବିଦ୍ୟାଶିକ୍ଷା, ରାଜନୀତି ବିଜ୍ଞାନ ଶିକ୍ଷା ଏହିପରି ନାନା ପ୍ରକାର ଶିକ୍ଷା ଦିଆଯାଉଛି । କିନ୍ତୁ ଯାହା ହେଉଛି ମୂଳଶିକ୍ଷା ଅର୍ଥାତ୍ ଧନ୍ଦାଜ୍ଞାନ ମାଧ୍ୟମରେ ଶିକ୍ଷା, ସମାଜ ସେବା ଶିକ୍ଷା ଆଡ଼କୁ ଦୃଷ୍ଟିଦେବା କଥା ଆମଶିକ୍ଷା ପଦ୍ଧତିରେ ନାହିଁ । ତା ଫଳରେ ବେକାର ସମସ୍ୟା ଦେଖାଦେଇଛି । ଆମର ସ୍କୁଲ କଲେଜମାନଙ୍କରେ କିଛି ନୂତନ ବିଷୟ ବସ୍ତୁ ନାହିଁ । ତା ଫଳରେ ଯେଉଁ ଛାତ୍ର ଛାତ୍ରୀମାନେ ସ୍କୁଲ କଲେଜରୁ ଉତ୍ତୀର୍ଣ୍ଣ ହେଉଛନ୍ତି ସେମାନେ ଖାଲି ଚାକିରୀ ପାଇଁ ଉଚ୍ଛନ୍ନ ହେଉଛନ୍ତି । ସେହି ପୁରୁଣା ମାନ୍ଧାତା ପଦ୍ଧତିରେ ଶିକ୍ଷା ଦିଆଯାଉଛି । ଏହାକୁ ତୁରନ୍ତ ପରିବର୍ତ୍ତନ ନକଲେ ବେକାର ସମସ୍ୟା ଯେଭଳି ଉତ୍କଟ ହେଲାଣି ତାକୁ ସମ୍ଭାଳି ହେବ ନହିଁ ଓ ତାହାକୁ ସମାଧାନ କରିହେବ ନାହିଁ । ଶିକ୍ଷା ସଂପର୍କରେ ଏହିପରି ନାନା ମତ ଓ ମନ୍ତବ୍ୟ ମାଧ୍ୟମରେ ଓଡ଼ିଶାର ଶିକ୍ଷା ପଦ୍ଧତିର ଦୁର୍ବଳ ଦିଗ ଗୁଡ଼ିକ ଉପରେ ସେ ଆଲୋକପାତ କରିଥିଲେ ଏବଂ ଏହା ଥିଲା ତାଙ୍କର ପ୍ରୟୋଗ ବାଦୀ ଦୃଷ୍ଟି କୋଣ ।

୧୯୬୮ ମସିହାରେ ବିଧାନ ସଭା ଅଧିବେଶନରେ ଜଗନ୍ନାଥ ମନ୍ଦିର ପରିଚାଳନା ବିଧେୟକ ଏବଂ ମୁନିସିପାଲିଟି ଆଇନ ସଂପର୍କରେ ହୋଇଥିବା

ଆଲୋଚନାରେ ବିନାୟକ ବାବୁ ସକ୍ରିୟ ଭାଗ ନେଇ ଚମତ୍କାର ମନ୍ତବ୍ୟ ଦେଇଥିଲେ । ୧୯୭୨ ମସିହାରେ ବିଧାନସଭା ଅଧିବେଶନରେ ସେ ନିଶା ନିବାରଣ ଉପରେ ଗୁରୁତ୍ୱ ଦେଇ ଯୁକ୍ତି କରି ଦର୍ଶାଇଥିଲେ – ନୈତିକତା ଦୃଷ୍ଟିରୁ ନିଶା ନିବାରଣ ଜାରି କରିବା ଉଚିତ । ଏହାର ବାସ୍ତବ 'ଦିଗ ସଂପର୍କରେ ସଚେତନ ହେବାକୁ ସେ ଜଣାଇଥିଲେ । ଅନ୍ୟାନ୍ୟ ରାଜ୍ୟମାନେ ପରୀକ୍ଷା ମୂଳକ ଭାବେ କାର୍ଯ୍ୟ କରି ନିଶାନିବାରଣ କ୍ଷେତ୍ରରେ କୃତକାର୍ଯ୍ୟ ହୋଇନଥିଲେ ମଧ୍ୟ ଓଡ଼ିଶାରେ ତାହା ସଫଳ ହେବ – ଏହା ଥିଲା ତାଙ୍କର ଦୃଢ଼ ମତ । ସେଥିପାଇଁ ରାଜସ୍ୱ କ୍ଷତିକୁ ସେ ଗୁରୁତ୍ୱ ଦେଇନଥିଲେ । ଦକ୍ଷିଣ ପୂର୍ବ ରେଲୱେର ପ୍ରଧାନ କାର୍ଯ୍ୟାଳୟ କଲିକତାରୁ ଓଡ଼ିଶାକୁ ଆଣିବା ପାଇଁ ୧୯୫୨ ରୁ ଉଦ୍ୟମ ହୋଇଥିଲା । ୧୯୭୨ ମସିହାରେ ବିଧାନ ସଭାରେ ମୁଖ୍ୟମନ୍ତ୍ରୀଙ୍କର ଏହି ସଂପର୍କିତ ପ୍ରସ୍ତାବକୁ ଆଚାର୍ଯ୍ୟ ସମର୍ଥନ ଜଣାଇଥିଲେ । ଆୟ ଦୃଷ୍ଟିରୁ ଏବଂ ରେଲୱେ ସିଷ୍ଟମ୍‌ର ଓଡ଼ିଶା କେନ୍ଦ୍ରସ୍ଥଳୀ ହୋଇଥିବା ଦୃଷ୍ଟିରୁ ରେଲୱେ ହେଡ୍‌କ୍ୱାର୍ଟରସ୍ ଓଡ଼ିଶା କୁ ଆଣିବାକୁ ହେବ ଏବଂ ଏଥିପାଇଁ ଆମେ ଉଚିତ ଦାବି କରୁଛୁ । ଏହିପରି କହି ସେ ଏହାକୁ ଓଡ଼ିଶା ବାସୀଙ୍କର ଦାବି ବୋଲି ପ୍ରକାଶ କରିଥିଲେ । ୧୯୭୦ ମସିହାରେ ନିଯୁକ୍ତି କ୍ଷେତ୍ରରେ ସ୍ଥାନ ସଂରକ୍ଷଣ ପ୍ରସଙ୍ଗରେ ଆଚାର୍ଯ୍ୟଙ୍କର ଭାଷଣ ବାସ୍ତବବାଦୀ ଦୃଷ୍ଟି କୋଣର ପରିଚାୟକ । ସେ କହିଥିଲେ – ସମ୍ବିଧାନରେ ସ୍ଥାନ ସଂରକ୍ଷଣ ର ବ୍ୟବସ୍ଥା ରହିଛି । କିନ୍ତୁ ନିଯୁକ୍ତିରେ ସେମାନଙ୍କ ପ୍ରତି ଅବହେଳା କରାଯାଉଛି । କେବଳ ସରକାରୀ ସ୍ତରରେ ନୁହେଁ ଅର୍ଦ୍ଧ ସରକାରୀ ସଂସ୍ଥା ବା କର୍‌ପୋରେସନ୍‌ମାନଙ୍କରେ ସେମାନଙ୍କର ପ୍ରକୃତ ଦାବିର ଅବହେଳା କରାଯାଉଛି । ମାତ୍ର ସମ୍ବିଧାନର ସଂଶୋଧନ କରି ଅଧିକ ଦଶ ବର୍ଷ ପାଇଁ ସ୍ଥାନ ସଂରକ୍ଷଣ ଇତ୍ୟାଦି ସୁବିଧା ଦେଇ ଫଳ କଣ ହେବ ମୁଁ ବୁଝିପାରୁ ନାହିଁ । ସେଥିପାଇଁ ସବୁ ରାଜନୈତିକ ଦଳ ସମାଜରେ ଉଚ୍ଚସ୍ଥାନରେ ଥିବା ବ୍ୟକ୍ତିମାନେ ସମସ୍ତେ ଏକାଠି ବସି ଏମାନଙ୍କ ଅବସ୍ଥାର ଉନ୍ନତି କରିବା ପାଇଁ ଯଦି ଯୋଜନା ନ କରନ୍ତି, ତାହାହେଲେ ସେମାନଙ୍କର କୌଣସି ଉନ୍ନତି ହେବ ନାହିଁ । ପ୍ରଥମେ ସେମାନଙ୍କର ଅର୍ଥନୈତିକ ଅବସ୍ଥା ଉନ୍ନତ ହେଲେ ସେମାନେ ସମାଜର ଗୋଟିଏ ସ୍ତରକୁ ଆସିପାରିବେ । ଆଜି ସେମାନେ ଦରିଦ୍ର ଅବସ୍ଥାରେ ଥିବା ହେତୁ ସମାଜରେ ଅନୁନ୍ନତ ସ୍ତରରେ ଅଛନ୍ତି । ଅନ୍ୟମାନଙ୍କ ସହିତ ସମକକ୍ଷ ହୋଇପାରୁ ନାହାନ୍ତି । ଅର୍ଥନୈତିକ ଦିଗରେ ସେମାନଙ୍କର ଉନ୍ନତି ହେବା ଆବଶ୍ୟକ । ହରିଜନ ମାନଙ୍କୁ ୯୦୦୦ ଏକର ଓ ଆଦିବାସୀ ମାନଙ୍କୁ ୨୭୫୦୦୦ ଏକର ଜମି ଦିଆଯାଇଛି ବୋଲି ରାଜ୍ୟପାଳଙ୍କ ରିପୋର୍ଟରେ ଅଛି । ସେମାନଙ୍କର ସଂଖ୍ୟା ତୁଳନାରେ ଏ ଜମିର ପରିମାଣ କିଛି ନୁହେଁ । ସେମାନଙ୍କ ମଧ୍ୟରେ ଥିବା ଭୂମିହୀନ ଶ୍ରମିକମାନଙ୍କୁ ଚାଷୋପଯୋଗୀ ଜମି ବଣ୍ଟନ କରିବା ନିହାତି ଆବଶ୍ୟକ । ବିଶେଷ

କରି ଗାନ୍ଧି ଶତବାର୍ଷିକୀ ବର୍ଷରେ ସରକାର ଘୋଷଣା କରିଛନ୍ତି ଯେ ଯେଉଁ ଆଦିବାସୀ ହରିଜନ ମାନେ ଜମିପାଇଁ ଦରଖାସ୍ତ କରିବେ ସେମାନଙ୍କର ବିଚାର କରାଯିବ । ଆମେ ସେ ଦିଗରେ ଯଥେଷ୍ଟ ଆଗେଇବା କଥା । ଜମିଜମା ସଂକ୍ରାନ୍ତରେ ଆଦିବାସୀଙ୍କ ଭିତରେ ଉତ୍ତେଜନା ପ୍ରକାଶ ପାଉଛି । ରକ୍ତାକ୍ତ ବିପ୍ଳବ କରିବା ପାଇଁ ସେମାନେ ପଛାଉନାହାନ୍ତି । ଏହା ଆମ ଦେଶ ପକ୍ଷରେ ଶୁଭ ସୂଚନା ନୁହେଁ । ଆଦିବାସୀ ମାନଙ୍କୁ ଜମି ନ ଦେବା ଏକ ସାମାଜିକ ବ୍ୟାଧି । ସୁନାବେଡ଼ା ମିଗ୍ କାରଖାନା ପାଇଁ ଯେଉଁ ଆଦିବାସୀ ମାନେ ବାସଚ୍ୟୁତ ହେଲେ, ହୀରାକୁଦ ବନ୍ଧ ଦ୍ୱାରା ଯେଉଁମାନେ ବାସଚ୍ୟୁତ ହେଲେ, ରାଉରକେଲା କାରଖାନା ସକାଶେ ଯେଉଁମାନେ ବାସଚ୍ୟୁତ ହେଲେ ସେମାନଙ୍କୁ ଚାକିରୀ ଦେବା, ସେମାନଙ୍କର ଥଇଥାନ କରିବା ହେଉଛି ପ୍ରଥମ କର୍ତ୍ତବ୍ୟ । ଆଜି ପର୍ଯ୍ୟନ୍ତ ଏହା ହୋଇ ପାରିଲା ନାହିଁ ।

କୃଷିର ଉନ୍ନତି ପାଇଁ ଆଚାର୍ଯ୍ୟଙ୍କର ମତାମତ ସଦାସର୍ବଦା ଗ୍ରହଣ ଯୋଗ୍ୟ । ୧୯୬୭ ମସିହାରେ ଜଳସେଚନ ଯୋଜନା ପ୍ରତି ସରକାର ଯେତିକି ଦୃଷ୍ଟି ଦେବାର କଥା ତାହା ହୋଇପାରି ନଥିଲା ବୋଲି ସେ ଦୃଢ଼ ମତ ଉପସ୍ଥାପନ କରିଥିଲେ । ସେ ପ୍ରସଂଗରେ ସେ ଗଞ୍ଜାମର ଋଷିକୂଲ୍ୟା ପ୍ରୋଜେକ୍ଟ କଥା କହିଥିଲେ । ଏ ପରି ଗୋଟିଏ ଯୋଜନା ଅନ୍ୟତ୍ର ନାହିଁ । ଯେଉଁ ଦୁଇଟି ଜଳ ଭଣ୍ଡାର ତାକୁ ପାଣି ଯୋଗାଉଛି ତାହା Silted ହୋଇଯାଉଛି ; ତାର ପ୍ରତିକାର ହେବା ଉଚିତ । ହରଭଙ୍ଗୀ ଯୋଜନା ତୁରନ୍ତ କିପରି କାର୍ଯ୍ୟକାରୀ ହେବ ଏବଂ ଋଷିକୂଲ୍ୟା କେନାଲ ସିଷ୍ଟମକୁ କିପରି ପାଣି ଯୋଗାଇ ଦିଆଯିବ, କାର୍ଯ୍ୟାନୁଷ୍ଠାନ ହେବା ଉଚିତ । ସେ ବ୍ୟବସ୍ଥା ନହେଲେ ବହୁ ଅଞ୍ଚଳ ଜଳ ସେଚିତ ହୋଇପାରିବ ନାହିଁ ବୋଲି ସେ ମତ ଦେଇଥିଲେ । ସେହିପରି ଘୋଡ଼ାହାଡ଼, ଧନେଇ ଜଳସେଚନ ଯୋଜନା କୁ ସେ ସ୍ୱାଗତ କରି ଏହାକୁ ଏକ ଲାଭ ଜନକ ଯୋଜନା ବୋଲି ଗ୍ରହଣ କରିଥିଲେ । ମାତ୍ର ୧୯୭୪ ମସିହା ସୁଦ୍ଧା ଏହାର ଅଗ୍ରଗତି ରେ ବାଧାସୃଷ୍ଟି ହୋଇଥିବାର ସେ ଜଣାଇଥିଲେ । ଅଧିକ କୃଷି ଉତ୍ପାଦନ ନିମନ୍ତେ ଜଳସେଚନ ବ୍ୟବସ୍ଥାର ସଂପ୍ରସାରଣ ଏକାନ୍ତ ଆବଶ୍ୟକ । ତାଙ୍କ ମତରେ ବୃହତ୍ ଓ ମଧ୍ୟମ ଧରଣର ଜଳସେଚନ ପରିକଳ୍ପନା ଗୁଡ଼ିକ ସାହାଯ୍ୟରେ ସୃଷ୍ଟି କରାଯାଇଥିବା କ୍ରମ ବର୍ଦ୍ଧିଷ୍ଣୁ ଜଳସେଚନ ସୁବିଧା ସୁଯୋଗ ମାଧ୍ୟମରେ ପ୍ରାୟ ୮.୭୦ ଲକ୍ଷ୍ୟ ହେକ୍ଟର ଚାଷ ଜମିକୁ ଜଳସେଚିତ କରାଯାଇପାରିବ । ତ୍ରିକୋଣଭୂମି ଜଳସେଚନ ପରିକଳ୍ପନା ସମେତ କାର୍ଯ୍ୟକାରୀ ହେଉଥିବା ଜଳସେଚନ ପରିକଳ୍ପନା, ରାଜ୍ୟର ଯେଉଁସବୁ ଅନୁନ୍ନତ ଜିଲ୍ଲାରେ ଜଳସେଚନର ସୁବିଧା ସୁଯୋଗ ନାହିଁ ସେ ଜିଲ୍ଲା ମାନଙ୍କରେ ନୂତନ ପରିକଳ୍ପନା ଆରମ୍ଭ କରିବା ଏବଂ ଜଳସେଚନର ସୁବିଧା ସୁଯୋଗର ସଂପ୍ରସାରଣ କରିବା ଉଦ୍ଦେଶ୍ୟରେ ବିଭିନ୍ନ ଜିଲ୍ଲାରେ ନୂତନ ପରିକଳ୍ପନା କାର୍ଯ୍ୟକାରୀ କରିବା ସଂପର୍କରେ

ଅନୁସନ୍ଧାନ ଚଳାଇବା ପଞ୍ଚମ ପଞ୍ଚବାର୍ଷିକ ଯୋଜନାର ପ୍ରଧାନ ଲକ୍ଷ୍ୟ – ଏହାକୁ ଆଚାର୍ଯ୍ୟ ପୂର୍ଣ୍ଣ ସମର୍ଥନ କରିଥିଲେ । ୧୯୭୪ ମସିହା ଜୁନ୍ ୩ ତାରିଖରେ ବଜେଟ୍ ଭାଷଣରେ ମନ୍ତ୍ରୀ ବିନାୟକ ଆଚାର୍ଯ୍ୟ କୃଷି ଉପରେ ବିଶେଷ ଗୁରୁତ୍ୱ ଦେଇଥିଲେ । ସେ କହିଥିଲେ କୃଷି ଓ ଆନୁଷଙ୍ଗିକ କାର୍ଯ୍ୟ ଏ ରାଜ୍ୟର ଅର୍ଥନୀତିକୁ ନିୟନ୍ତ୍ରଣ କରିଥାଏ । ରାଜ୍ୟର ଆୟର ପ୍ରାୟ ଶତକଡ଼ା ୭୦ ଭାଗ କୃଷିରୁ ମିଳିଥାଏ ଏବଂ ଏହାଦ୍ୱାରା ରାଜ୍ୟର ଶ୍ରମଜୀବୀ ଲୋକ ସଂଖ୍ୟାର ତିନି – ଚତୁର୍ଥାଂଶ ଲୋକଙ୍କର କର୍ମସଂସ୍ଥାନ ହୋଇଥାଏ । ଧାରାବାହିକ ଭାବରେ ବନ୍ୟା, ମରୁଡ଼ି ଓ ବାତ୍ୟା ଆଦିର ପ୍ରକୋପ ଫଳରେ ଫସଲ ହାନି ଘଟି ଆସିଛି । ଆବଶ୍ୟକତା ତୁଳନାରେ ଜଳସେଚନ ସୁବିଧାର ଅଭାବ, ଗ୍ରାମ୍ୟ ଋଣ ଯୋଗାଣ ବ୍ୟବସ୍ଥାର ଅଭାବ, ଚାଷଜମି ଗୁଡ଼ିକ ଭାଗ ଭାଗ କରାଯିବା ଏବଂ କୃଷିକାର୍ଯ୍ୟପାଇଁ ଆବଶ୍ୟକୀୟ ସାମଗ୍ରୀ ଆଦିର ଅଭାବ । ଜମିର ଉତ୍ପାଦିକା ଶକ୍ତି କମାଇଦେବାର କାରଣ ହୋଇଛନ୍ତି । ଅଧିକ ଜମିରେ ଅଧିକ ଫସଲ ପ୍ରବର୍ତ୍ତନ କରି ଅଧିକ ଅମଳକ୍ଷମ ଫସଲ ବୃଦ୍ଧି କରି, ଅଧିକ ଜମିରେ ଚାଷ ଆରମ୍ଭ କରି, ସାର, ବିହନ, ଶସ୍ୟ, ସଂରକ୍ଷଣ ସାମଗ୍ରୀ ଇତ୍ୟାଦି ଅତ୍ୟାବଶ୍ୟକ କୃଷି ସାମଗ୍ରୀ ଯୋଗାଇ, ଜଳସେଚନ ଓ ଆନୁଷ୍ଠାନିକ ସୂତ୍ରରୁ ଉତ୍ପାଦନ ନିମନ୍ତେ ଋଣର ବ୍ୟବସ୍ଥାକରି ଏବଂ ଆଧୁନିକ କୃଷି ପ୍ରଣାଳୀ କୁ ଜନପ୍ରିୟ କରାଇ ସରକାର କୃଷି ଉତ୍ପାଦନ ଓ ଉନ୍ନୟନ ପ୍ରତି ସର୍ବାଧିକ ଗୁରୁତ୍ୱ ଆରୋପ କରୁଛନ୍ତି । ୧୯୭୩ – ୭୪ ମସିହାରେ ୭.୪୨ ଲକ୍ଷ ହେକ୍ଟର ଜମିରେ ଅଧିକ ଅମଳକ୍ଷମ ଫସଲ କରାଯାଇଥିବା ସ୍ଥଳେ ୧୯୭୪ – ୭୫ ରେ ୯.୩୨ ଲକ୍ଷ ହେକ୍ଟର ଜମିରେ ଏହି ଫସଲ କରିବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । କ୍ଷୁଦ୍ର ଚାଷୀ ଏବଂ ଦୁର୍ବଳତର ଶ୍ରେଣୀର କୃଷିଜୀବୀ ମାନଙ୍କର ସୁବିଧା ପାଇଁ ସମବାୟ ଋଣ ବ୍ୟବସ୍ଥା ତଥା ତତ୍ସଂପୃକ୍ତ ଅର୍ଥ ବିନିଯୋଗ ନୀତି କ୍ଷେତ୍ରରେ ଉତ୍ପାଦନ ବୃଦ୍ଧିକୁ ସାହାଯ୍ୟ କଲାଭଳି ଋଣ ଯୋଗାଇବା ଉପରେ ଗୁରୁତ୍ୱ ଦିଆଯାଇଛି । ବଲାଙ୍ଗୀର, କଟକ, ଢ଼େଙ୍କାନାଳ, ଗଞ୍ଜାମ ଓ କେନ୍ଦୁଝର ଜିଲ୍ଲା ମାନଙ୍କରେ କ୍ଷୁଦ୍ରଚାଷୀ ଉନ୍ନୟନ ସଂସ୍ଥା ଏବଂ ଅତିକ୍ଷୁଦ୍ର ଚାଷୀ ଓ କୃଷି ଶ୍ରମିକ ସଂସ୍ଥା ଗୁଡ଼ିକ କାର୍ଯ୍ୟ କରୁଛନ୍ତି । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଛୋଟ ଛୋଟ ଚାଷୀମାନଙ୍କ ମଧ୍ୟରେ ଉନ୍ନତ କୃଷି ପ୍ରଣାଳୀ ପ୍ରବର୍ତ୍ତନ କରିବା ଏବଂ ସେମାନଙ୍କୁ ଜଳସେଚନ ଗୌଣ ଜୀବିକା ଓ ଫସଲ ଇତ୍ୟାଦି ଯୋଗାଇ ଦେବା ହେଉଛି ଏହି ପରିକଳ୍ପନା ଗୁଡ଼ିକର ଲକ୍ଷ୍ୟ । ୧୯୭୪ –୭୫ ରେ ମାଧ୍ୟମିକ ବିଦ୍ୟାଳୟ ଗୁଡ଼ିକରେ କୃଷି ସଂପର୍କୀୟ ପାଠ୍ୟକ୍ରମର ଏକ ନୂଆ ପରିକଳ୍ପନା ପ୍ରବର୍ତ୍ତନ କରାଯିବାର ପ୍ରସ୍ତାବ ରହିଛି । ଛାତ୍ରଛାତ୍ରୀମାନଙ୍କୁ କୃଷି ସଂପର୍କୀୟ ଶିକ୍ଷା ଦେବା ଏହି ପରିକଳ୍ପନାର ଲକ୍ଷ୍ୟ । ଏହା ଫଳରେ ଛାତ୍ର ମାନେ ପରବର୍ତ୍ତୀ କାଳରେ ନିଜନିଜ କୁ କୃଷି କ୍ଷେତ୍ରରେ ନିୟୋଜିତ କରି ପ୍ରଗତିଶୀଳ କୃଷକରେ ପରିଣତ ହୋଇପାରିବେ ।

କଦଳୀ, କାଜୁ ବାଦାମ, ସପୁରି, ପଣସ ଓ ନଡ଼ିଆ ଚାଷ ଇତ୍ୟାଦି ଫଳମୂଳ ଓ ପନିପରିବା ଚାଷର ବ୍ୟାପକ ପ୍ରସାର କରିବା କୃଷି କାର୍ଯ୍ୟ କ୍ରମର ଏକ ନୁତନ ବୈଶିଷ୍ଟ୍ୟ । ଝୋଟ ଚାଷର ବିକାଶକୁ ବ୍ୟାପକତାର କରିବାକୁ ହେବ ଓ ସେଥିପାଇଁ କେନ୍ଦ୍ରୀୟ ଯୋଜନା ଅନୁଯାୟୀ ୨୦ ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି ରାଜ୍ୟର ଭୂତଳ ଜଳ ସଂପଦର ବିକାଶ ନିମନ୍ତେ କେନ୍ଦ୍ରୀୟ ସମବାୟ ଭୁ-ଉନ୍ନୟନ ବ୍ୟାଙ୍କ ଆବଶ୍ୟକୀୟ ଋଣ ଯୋଗାଇଦେବାପାଇଁ ଏକ ବଡ଼ ଧରଣର ପରିକଳ୍ପନା ହାତକୁ ନେଇଛନ୍ତି । ସମବାୟ ଋଣ ଉଦ୍ଦେଶ୍ୟରେ ସ୍ୱଳ୍ପ ଓ ମଧ୍ୟମ ମିଆଦୀ ଋଣ ପରିକଳ୍ପନା ଅନୁଯାୟୀ ୨୦ କୋଟି ଟଙ୍କା ବିନିଯୋଗ କରାଯିବାର ଲକ୍ଷ୍ୟ ରଖାଯାଇଛି । ଯେଉଁ ଯେଉଁ ସ୍ଥାନ ଗୁଡ଼ିକରେ ସମବାୟ ଆନ୍ଦୋଳନ ବିଶେଷ ଦୁର୍ବଳ ହୋଇପଡ଼ିଛି ସେହିସବୁ ସ୍ଥାନ ମାନଙ୍କରେ କୃଷକ ସେବା ସମିତି ପ୍ରତିଷ୍ଠା କରାଯିବାର ପ୍ରସ୍ତାବ ରହିଛି । ଏହି ବିବୃତି ମଧ୍ୟରେ ବିନାୟକ ଆଚାର୍ଯ୍ୟଙ୍କ ପ୍ରଗତିଶୀଳ ଅର୍ଥନୀତିଜ୍ଞର ଭାବଧାରା ବର୍ତ୍ତମାନ । ବାସ୍ତବରେ ତାଙ୍କ ଚିନ୍ତନରେ ଥିଲା କୃଷିର ସଂପ୍ରସାରଣ ହିଁ ଓଡ଼ିଶାର ବିକାଶର ପ୍ରଧାନ ଆବଶ୍ୟକତା । ଏହା ସହିତ ମୃତ୍ତିକା ସଂରକ୍ଷଣ, ଭୂ.ସଂସ୍କାର, ପଶୁପାଳନ ଓ ମତ୍ସ୍ୟଚାଷ, ଜଙ୍ଗଲ ଉନ୍ନୟନ ବ୍ୟବସ୍ଥା, ଖଣି ଅଞ୍ଚଳର ଉନ୍ନତି, ସ୍ୱାସ୍ଥ୍ୟ ଓ ଜଳଯୋଗାଣ, ଗୋଷ୍ଠୀ ଉନ୍ନୟନ ଓ ଅନୁନ୍ନତ ଶ୍ରେଣୀର କଲ୍ୟାଣ, ଶ୍ରମ, ନିଯୁକ୍ତି ଓ ଗୃହନିର୍ମାଣ, ସ୍ୱଳ୍ପ ସଞ୍ଚୟ ପରି ଅନେକ ବିଷୟରେ ସେ ସ୍ୱାଧୀନ ମତ ବିଧାନ ସଭାରେ ଉପସ୍ଥାପନ କରିଥିଲେ । ସଂଗ୍ରହାଳୟ, ପ୍ରାଚୀନ ଲେଖାଗାର, ପ୍ରତ୍ନତତ୍ତ୍ୱ, ନୃତ୍ୟ, ନାଟକ, ସଂଗୀତ, କଳା, ସାହିତ୍ୟ, କ୍ରୀଡ଼ା କସରତ ପ୍ରଭୃତିର ବିକାଶ ପାଇଁ ସେ ସ୍ୱର ଉଠାଇଥିଲେ । ଓଡ଼ିଶାରେ ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣ କାର୍ଯ୍ୟକ୍ରମ କୁ ଉତ୍ସାହିତ କରିବା ପାଇଁ ଏବଂ ଅନେକ ପ୍ରେକ୍ଷାଳୟନିର୍ମାଣ କରିବା ପାଇଁ ଏକ ଚଳଚ୍ଚିତ୍ର ଉନ୍ନୟନ କର୍ପୋରେସନ୍ ଗଢ଼ା ଯିବାକୁ ସେ ୧୯୭୪ ରେ ପରାମର୍ଶ ଦେଇଥିଲେ ।

ବିଧାନ ସଭାରେ ପ୍ରଦତ୍ତ ଏହିପରି ମତ ଓ ମନ୍ତବ୍ୟକୁ ବିଚାରକୁ ନେଲେ ବିନାୟକ ଆଚାର୍ଯ୍ୟଙ୍କର ସମାଜବାଦୀ ଦୃଷ୍ଟିକୋଣ ସ୍ପଷ୍ଟ ଜଣାପଡ଼େ । ସମସାମୟିକ ରାଜନୈତିକ ସ୍ରୋତ ପ୍ରତିକୂଳ ଥିବାରୁ ତାଙ୍କର ପରିକଳ୍ପନା ବାସ୍ତବ ରୂପ ନେଇ ପାରିନଥିଲା । କିନ୍ତୁ ମୂଲ୍ୟବୋଧ ଭିତ୍ତିକ ରାଜନୀତି କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ସେ ଥିଲେ ଜଣେ ପ୍ରତିନିଧି । ସେ ବିରୋଧୀ ନେତା ହିସାବରେ ସରକାରଙ୍କୁ ବିରୋଧ ପାଇଁ ବିରୋଧ ନକରି ଗଠନ ମୂଳକ ପ୍ରସ୍ତାବମାନ ଦେଉଥିଲେ । ସେ ଥିଲେ ସାମ୍ୟବାଦର ପ୍ରବକ୍ତା ଓ ନ୍ୟାୟପୂର୍ଣ୍ଣ ସମାଜ ସ୍ଥାପନ ଥିଲା ତାଙ୍କର ମୂଳମନ୍ତ୍ର ।

**ପ୍ରାଧ୍ୟାପକ**
ଇତିହାସ ବିଭାଗ
**ବିନାୟକ ଆଚାର୍ଯ୍ୟ ମହାବିଦ୍ୟାଳୟ**
ବ୍ରହ୍ମପୁର ।